ପ୍ରଫେସର (ଡା:) ନିତ୍ୟାନନ୍ଦ ସ୍ୱାଇଁ

# ଅବିସ୍ମରଣୀୟ ବିଜ୍ଞାନ କଥା


ପ୍ରଥମ ସଂସ୍କରଣ — ୨୦୦୩

ପ୍ରକାଶିକା — © ଶ୍ରୀମତୀ ଝରଣା ରଥ
୪୦୯, ବନ୍ଦନା ଆପାର୍ଟମେଣ୍ଟସ୍, ବିବେକାନନ୍ଦମାର୍ଗ,
ଭୁବନେଶ୍ୱର-୭୫୧୦୦୨

ପ୍ରଚ୍ଛଦ ଶିଳ୍ପୀ — ହୀରାଲାଲ୍ ବରିହା

ମୁଦ୍ରଣ — ରେପ୍ରୋ ପ୍ରିଣ୍ଟର୍ସ

ମୂଲ୍ୟ — ଅଶି ଟଙ୍କା


Prof. (Dr.) Nityananda Swain

ABISMARANIYA BIGYAN KATHA


1st Edition — 2003

Publisher — © Mrs. Jharana Roth
409, Vandana Apts. Vivekanand Marg,
Bhubaneswar-751002

Cover — Hiralal Bariha

Printing — Repro Printers

Price — Rs. 80/-

# ସୂଚୀପତ୍ର

# ନିଜ ଉପରେ ବୈଜ୍ଞାନିକ ପରୀକ୍ଷା

ତାଙ୍କ ନାଁ ୱେର୍‌ନର ଫୋର୍‌ସ୍‌ମ୍ୟାନ୍ । ସେ ଜନ୍ମ ହୋଇଥିଲେ ବର୍ଲିନ୍‌ରେ । ବର୍ଲିନ୍ ହେଉଛି ଜର୍ମାନୀର ରାଜଧାନୀ ।

ଫୋର୍‌ସ୍‌ମ୍ୟାନ୍ ଥିଲେ ଜଣେ ଡ଼ାକ୍ତର । ପରିସ୍ରା ତିଆରି କରୁଥିବା ବୃକକ୍, ପରିସ୍ରା ସଂଚୟ ହୋଇ ରହୁଥିବା ମୂତ୍ରାଶୟ ଓ ମୂତ୍ରନଳୀ ଇତ୍ୟାଦି ଅଙ୍ଗକୁ ନେଇ ଶରୀରରେ ଏକ ପ୍ରଣାଳୀ କାମ କରିଥାଏ । ସେହି ସଂପର୍କୀୟ ରୋଗର ସେ ଚିକିତ୍ସା କରୁଥିଲେ । ବିଶେଷ କରି ଅପରେସନ୍ କରିବା ଥିଲା ତାଙ୍କର ପ୍ରଧାନ କାମ । ସେ ସିନା ଥିଲେ ମୂତ୍ରରୋଗର ଡ଼ାକ୍ତର, କିନ୍ତୁ ହୃତ୍‌ପିଣ୍ଡର ରୋଗଗୁଡ଼ିକ ପ୍ରତି ତାଙ୍କର ଆଗ୍ରହ ଥିଲା ବେଶୀ ।

ତାଙ୍କ ବେଳେ ହୃତ୍‌ପିଣ୍ଡ ରୋଗୀମାନଙ୍କର ଚିକିତ୍ସା ପାଇଁ ହୃତ୍‌ପିଣ୍ଡ ଭିତରକୁ ଔଷଧର ଇଂଜେକ୍‌ସନ୍ ଦିଆଯାଉଥିଲା । କିନ୍ତୁ, ଇଂଜେକ୍‌ସନ୍ ଦେବାବେଳେ ଭୁଲ୍‌ରେ ଇଂଜେକ୍‌ସନ୍ ଛୁଞ୍ଚି ପଶିଯାଉଥିଲା ଫୁସ୍‌ଫୁସ୍‌ରେ । କେତେବେଳେ କେମିତି ଛୁଞ୍ଚିର ମୁନ ହୃତ୍‌ପିଣ୍ଡକୁ ରକ୍ତ ଯୋଗାଉଥିବା ଧମନୀ ଭିତରକୁ ପଶିଯାଉଥିଲା । ଏଭଳି ଭୁଲ୍ ରୋଗୀପାଇଁ ସୃଷ୍ଟି କରୁଥିଲା ବିପଦ ।

ଏହି ସମସ୍ୟା ଦୂର କରିବା ପାଇଁ ଫୋର୍‌ସମ୍ୟାନ୍ ବହୁତ ଚିନ୍ତା କଲେ । ସେ ଜାଣିଥିଲେ ଯେ ଛୋଟ ଛୋଟ ଶିରା ମିଶିଥାଏ ବଡ଼ ଶିରାରେ । ବଡ଼ ବଡ଼ ଶିରା ପଡ଼ିଥାଏ ତାହାଠାରୁ ବଡ଼ ହୋଇଥିବା ଶିରାରେ । ସବୁଠାରୁ ବଡ଼ ଶିରା ଖୋଲିଥାଏ ହୃତ୍‌ପିଣ୍ଡ ଭିତରକୁ । ଶରୀରର ସବୁ ଅଂଶରୁ ଆସୁଥିବା ରକ୍ତ ହୃତ୍‌ପିଣ୍ଡର ଡ଼ାହାଣ ଅଳିନ୍ଦ ଭିତରକୁ ଶିରା ଦେଇ ପ୍ରବେଶ କରିଯାଏ ।

ଫୋର୍‌ସ୍‌ମ୍ୟାନ ଭାବିଲେ ଯେ ଶିରା ଭିତରେ ସରୁ ନଳୀଟିଏ ଭର୍ତ୍ତିକରି ତାକୁ ଧୀରେ ଧୀରେ ଠେଲି ଚାଲିଲେ ତାର ଅଗଟି ହୃତ୍‌ପିଣ୍ଡ ଭିତରେ ଯାଇ ପହଞ୍ଚିଯିବ । କିନ୍ତୁ, ଏଥିପାଇଁ ପ୍ରମାଣ ଦରକାର । ତେଣୁ, ମଲା ମଣିଷଠାରେ ସେ ଏହି ପରୀକ୍ଷା ଆରମ୍ଭ କଲେ । ଶବର କହୁଣିର ସାମନା ପଟରେ ଥିବା ଗୋଟିଏ ଶିରା ଭିତର ଦେଇ ସେ ଭର୍ତ୍ତିକଲେ ଗୋଟିଏ

ରବର ନଳୀ । ନଳୀଟିକୁ ପଛରୁ ଆସ୍ତେ ଆସ୍ତେ ଠେଲିବାରୁ ତାର ଆଗମୁଣ୍ଡ ଶବର ଡ଼ାହାଣ ଅଳିନ୍ଦରେ ପହଞ୍ଚିଗଲା । ଏହି ପରୀକ୍ଷା ସଫଳ ହେବାରୁ ଖୁବ୍ ଖୁସି ହୋଇଗଲେ ଫୋର୍‌ସ୍‌ମ୍ୟାନ୍ । ହେଲେ, ପରୀକ୍ଷାଟି ତ ସେ କରିଥିଲେ ମଲା ମଣିଷ ଦେହରେ । ଜିଅନ୍ତା ମଣିଷ ଦେହରେ ପରୀକ୍ଷା କରି ସଫଳ ହେଲେ ସିନା, ତାକୁ ସଫଳତା ବୋଲି ଧରାଯିବ ! କିନ୍ତୁ, କେଉଁ ଜିଅନ୍ତା ମଣିଷ ଅବା ଏଥିପାଇଁ ରାଜି ହେବ ? ନିଜ ପାଇଁ ବିପଦ ଡ଼ାକି ଆଣିବ ? ତେଣୁ, ସେ ନିଜେ ନିଜ ଉପରେ ହିଁ ଏହି ପରୀକ୍ଷା କରିବା ନିମନ୍ତେ ସ୍ଥିର କଲେ । ନିଜ ଶିରା ଭିତର ଦେଇ ନଳୀ ଭର୍ତ୍ତି କରିବା ନିମନ୍ତେ ମନସ୍ଥ କଲେ ।

ଫୋର୍‌ସ୍‌ମ୍ୟାନ୍‌ଙ୍କର ଏହି ନିଷ୍ପତ୍ତି କଥା ଶୁଣିବାକୁ ପାଇଲେ ଅନ୍ୟ ଡ଼ାକ୍ତର ବନ୍ଧୁମାନେ । ଏପରି ନ କରିବା ପାଇଁ ସେମାନେ ତାଙ୍କୁ ବାରମ୍ବାର ସତର୍କ କରାଇଦେଲେ । କିନ୍ତୁ, ଫୋର୍‌ସ୍‌ମ୍ୟାନ୍ କି ଶୁଣିବା ଲୋକ ? ସେ' ତ ନିଜ ଜିଦ୍‌ରେ ଅଟଳ । ତାଙ୍କର ଜିଦ୍ ଦେଖି କେହି ତାଙ୍କ ସହ ସହଯୋଗ କଲେନି କି ସେହି ପରୀକ୍ଷାରେ ସାହାଯ୍ୟ କରିବା ନିମନ୍ତେ ଆଗେଇ ଆସିଲେନି । ହେଲେ, ଫୋର୍‌ସ୍‌ମ୍ୟାନ ଥିଲେ ନଛୋଡ଼ବନ୍ଧା । ନିଜ ଶିରାବାଟେ ନିଜେ ନଳୀ ଭର୍ତ୍ତିକରି ଫଳାଫଳ ପରୀକ୍ଷା କରିବା ନିମନ୍ତେ ଯୋଗାଡ଼ ଯନ୍ତ୍ର ଆରମ୍ଭ କରିଦେଲେ ସେ ।

ଏବେ ପରୀକ୍ଷା କରିବାର ପାଳି । କହୁଣି ସାମନା ପଟରେ ଯେଉଁ ବଡ଼ ଶିରାଟି ଥାଏ, ତାହାରି ଭିତର ଦେଇ ନଳୀ ଭର୍ତ୍ତି କରିବା କଥା । ସେ'ତ ଥିଲେ ମୂତ୍ରରୋଗ ଡ଼ାକ୍ତର । ତେଣୁ, ପରିସ୍ରା ଅଟକି ଗଲେ ପରିସ୍ରା କରିଇବା ପାଇଁ ଯେଉଁ ନଳୀ ଭର୍ତ୍ତି କରାଯାଇଥାଏ ମୂତ୍ରନଳୀରେ, ସେହି ନଳୀକୁ ଶିରାବାଟେ ଭର୍ତ୍ତି କରେଇବା ନିମନ୍ତେ ସେ ସ୍ଥିର କଲେ । ନଳୀ ପୂରେଇବା ପୂର୍ବରୁ ଯନ୍ତ୍ରଣା ନ ହେବା ପାଇଁ ସେଠାରେ ଦେଇଦେଲେ ବଧିରା ଇଂଜେକ୍‌ସନ୍ । ତା ପରେ ଛୁରୀରେ କାଟିଦେଲେ ଶିରା ଉପରର ଚମକୁ । ତା ପରେ ଶିରାରେ କଣା କରି ଶିରା ଭିତର ଦେଇ ଆଗକୁ ଆଗକୁ ଚାଲିଲା । କିଛି ସମୟ ପରେ ନଳୀର ଆଗମୁଣ୍ଡ ଡ଼ାହାଣ ଅଳିନ୍ଦରେ ପହଞ୍ଚିଗଲା ଭଳି ଲାଗିଲା ଫୋରସ୍‌ମ୍ୟାନ୍‌କୁ । ଭାବନ୍ତୁ, ଏ ସମସ୍ତ କାମ ଏକା ଏକା ନିଜ ଦେହରେ ହିଁ କରି ଚାଲିଥିଲେ ସେ ! କିନ୍ତୁ, ନଳୀଟି ଠିକ୍‌ବାଟରେ ଯାଇ ଯେ ତାଙ୍କ ହୃତ୍‌ପିଣ୍ଡରେ ପହଞ୍ଚିଛି, ଏହାର ତ ପୁଣି ପ୍ରମାଣ ଲୋଡ଼ା । ଏକ୍‌ସ-ରେ ପରୀକ୍ଷା ନ କଲେ ତ ତାହା ଜଣାପଡ଼ିବନି । ହେଲେ, ଏକ୍‌ସ୍-ରେ ଯନ୍ତ୍ର ଥାଏ ଅନ୍ୟ ଏକ କୋଠରୀରେ ।

ନଳୀଟି ସେହିପରି ଭାବରେ ଦେହ ଭିତରେ ରହିଥିବା ବେଳେ ଫୋର୍‌ସ୍‌ମ୍ୟାନ ଚାଲିଲେ ଏକ୍‌ସ୍-ରେ କରା ହେଉଥିବା କୋଠରୀକୁ । ଏଥିପାଇଁ ତାଙ୍କୁ ଅତିକ୍ରମ କରିବାକୁ ପଡ଼ିଥିଲା ଦୁଇଟି ଲମ୍ବା ବାରଣ୍ଡା ଏବଂ କେତୋଟି ତୀଖ ପାହାଚ । ଏକ୍‌ସ-ରେ ଫଟୋ

ଉଠିଲା । ନଳୀଟିର ଅଗ ଡ଼ାହାଣ ଅଳିନ୍ଦ ଭିତରକୁ ପହଞ୍ଚିଯାଇଥିବାର ପ୍ରମାଣ ମିଳିଗଲା ଏକ୍ସ-ରେ ଫଟୋରୁ ।

ବାରମ୍ବାର ପ୍ରମାଣ କରିବା ନିମନ୍ତେ ଫୋରସ୍‌ମ୍ୟାନ୍ ନିଜ ହୃତ୍‌ପିଣ୍ଡ ଭିତରକୁ ନଅଥର ନଳୀ ଭର୍ତ୍ତି କରିଥିଲେ । ଏପରିକି, ଆଉ ବେଶୀଥର ନଳୀ ଭର୍ତ୍ତି କରିବା ପାଇଁ କହୁଣୀ ସାମନା ପଟ ଶିରାରେ ଆଉ ଜାଗା ମିଳିଲାନି ।

ସେତେବେଳେ ବର୍ଲିନ୍‌ରେ ଥାଆନ୍ତି ପ୍ରଫେସର ଫର୍ଡିନାଣ୍ଡ ସଭଏରବ୍ରୁଚ୍ । ହୃତ୍‌ପିଣ୍ଡ-ଫୁସ୍‌ଫୁସ୍ ଇତ୍ୟାଦି ଅଙ୍ଗର ରୋଗକୁ ଅପରେସନ୍ ଦ୍ୱାରା ଭଲ କରିବା ଥିଲା ତାଙ୍କର କାମ । ସାରା ପୃଥିବୀରେ ତାଙ୍କର ଭାରି ନାଆଁ ଥିଲା । ଫୋର୍‌ସମ୍ୟାନ ନିଜେ ଯାଇ ଦେଖାକଲେ ତାଙ୍କୁ । ହୃତ୍‌ପିଣ୍ଡ ଭିତରକୁ ନଳୀ ଭର୍ତ୍ତି କରାଇ ହୃତ୍‌ପିଣ୍ଡର ରୋଗ ଜାଣିବା କି ରୋଗର ଚିକିତ୍ସା କରିବା ସମ୍ଭବ ହେବ କି ନା, ତାହା ପରୀକ୍ଷା କରି ଦେଖିବା ପାଇଁ ସଭଏରବ୍ରୁଚ୍‌କୁ ଅନୁରୋଧ କଲେ । କିନ୍ତୁ, ସଭଏର୍‌ବ୍ରୁଚ୍ ମୁହଁ ଛିଆଡ଼ି ଉତ୍ତର ଦେଲେ, "ମୁଁ ରୋଗୀମାନଙ୍କ ଚିକିତ୍ସା ପାଇଁ ଡ଼ାକ୍ତରଖାନା ଖୋଲିଛି ନା ଡ଼ାକ୍ତରଖାନା ଖୋଲିଛି ସର୍କସ ଦେଖେଇବା ପାଇଁ ?"

ଏହା ପରେ, ଅନ୍ୟମାନେ ଫୋରସ୍‌ମ୍ୟାନ୍‌କୁ ହୁଏତ ପାଗଳା ବୋଲି ଧରିନେଲେ । ତାଙ୍କୁ ଡ଼ାକ୍ତରମାନେ ବାସନ୍ଦ କଲେ । ତାଙ୍କୁ ଚାକିରିଟିଏ ବି ମିଳିଲାନି ।

ଏହା ଭିତରେ ବିତିଗଲା ପାଖାପାଖି ୨୦ ବର୍ଷ । ଜର୍ମାନୀର ରାଇନ୍ ନଈ କୂଳରେ ଥିବା ଏକ ଛୋଟିଆ ସହରରେ ଘରୋଇ ଚିକିତ୍ସା କରି କଷ୍ଟେ ମଷ୍ଟେ ଗୁଜୁରାଣ ମେଣ୍ଟାଉଥିବା ଅବସ୍ଥାରେ ତାଙ୍କର ଦେଖା ମିଳିଲା । ହେଲେ, ତାଙ୍କୁ ପୁଣି ଦେଖାକରିବା ଦରକାର ପଡ଼ିଲା କାହିଁକି ? କି କାମ ଥିଲା ତାଙ୍କ ପାଖରେ ?

ହୃତ୍‌ପିଣ୍ଡ ଭିତରେ ନଳୀ ଭର୍ତ୍ତିକରାଇବା ସଂପର୍କରେ ସେ ଯେଉଁ ପରୀକ୍ଷାନିରୀକ୍ଷା କରିଥିଲେ, ବୈଜ୍ଞାନିକମାନେ ତାର ଗୁରୁତ୍ୱ ଜାଣିପାରିଲେ । ହୃଦ୍‌ରୋଗ ନିର୍ଣ୍ଣୟ କରିବା ଏବଂ ଚିକିତ୍ସା କରିବାରେ ଏହି ଉପାୟ ଅବଲମ୍ବନ କଲେ ।

ଏହି ଆବିଷ୍କାର ପାଇଁ ୱେର୍‌ନର୍ ଫୋର୍‌ସ୍‌ମ୍ୟାନ୍‌କୁ ୧୯୫୬ ମସହାରେ ଚିକିତ୍ସା ବିଜ୍ଞାନ ନୋବେଲ୍ ପୁରସ୍କାର ମିଳିଲା ।

ୱେର୍‌ନର୍ ଫୋରସ୍‌ମ୍ୟାନ୍ ସିନା ଆଜି ନାହାଁନ୍ତି, କିନ୍ତୁ ସେ ଯେଉଁ ପଦ୍ଧତି ଆବିଷ୍କାର କରିଥିଲେ ତାର ସୁଫଳ ଉପଭୋଗ କରିଚାଲିଛନ୍ତି ଲକ୍ଷ ଲକ୍ଷ ହୃଦ୍‌ରୋଗୀ ।



# ପରୀକ୍ଷା ଫଳ, ହେଲା ବିଫଳ

ତାଙ୍କର ପୂରା ନାଁ ଲର୍ଡ ୱିଲିୟମ୍ ଥମ୍‌ସନ୍ କେଲ୍‌ଭିନ୍ । କିନ୍ତୁ, 'ଥମସନ୍' ନାଁରେ ସେ ବେଶୀ ଜଣାଶୁଣା ।

ଥମ୍‌ସନ୍ ଏବଂ ପାର୍କିନ୍‌ସନ୍ ଥିଲେ ସହପାଠୀ । ଦୁଇଜଣଙ୍କ ଭିତରେ ଖୁବ୍ ଭଲ ପଡୁଥିଲା । ଉଭୟ ଥିଲେ ଅତି ଭଲଛାତ୍ର । ଆଗରେ ଥାଏ କ୍ୟାମ୍ବ୍ରିଜ୍ ପରୀକ୍ଷା । ପରୀକ୍ଷାରେ କିଏ ପ୍ରଥମ ସ୍ଥାନ ଅଧିକାର କରିବ ସେଥିପାଇଁ ଦୁଇଜଣଯାକ ପ୍ରତିଯୋଗିତା ଚଳେଇଥାଆନ୍ତି । ପରୀକ୍ଷା ହେଲା । ଫଳ ବାହାରିଲା । ପରୀକ୍ଷାରେ ଫାଷ୍ଟ ହୋଇଗଲେ ପାର୍କିନ୍‌ସନ୍ । ଦ୍ୱିତୀୟ ସ୍ଥାନରେ ରହିଗଲେ ଥମ୍‌ସନ୍ ।

ପରୀକ୍ଷାରେ ପଚରା ଯାଇଥିଲା ଅତି କଠିନ ପ୍ରଶ୍ନଟିଏ । ସେହି ଦୁଇଜଣଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ପ୍ରଶ୍ନଟିର ଉତ୍ତର ଦେଇଥିଲେ । କିନ୍ତୁ ଥମ୍‌ସନ୍ ଏବଂ ପାର୍କିନ୍‌ସନ୍ ଠିକ୍ ଉତ୍ତର ଦେଇଥିଲେ ମଧ୍ୟ ଉଭୟଙ୍କର ଉତ୍ତର ପୂରାପୂରି ମିଳିଯାଉଥିଲା । ଏହା ଦେଖି ବଡ଼ ସନ୍ଦେହରେ ପଡ଼ିଲେ ଖାତା ଦେଖିଥିବା ପରୀକ୍ଷକ । ପରୀକ୍ଷକଙ୍କର ସନ୍ଦେହ ହେଲା ଯେ ବୋଧହୁଏ ଦୁଇଜଣଙ୍କ ମଧ୍ୟରୁ କେହି ଜଣେ ଅନ୍ୟ ଜଣକ ଖାତା ଦେଖି ପରୀକ୍ଷାରେ କପି କରିଛି । ପ୍ରକୃତ ଘଟଣା କଅଣ ଜାଣିବା ନିମନ୍ତେ ତାଙ୍କର ଆଗ୍ରହ ହେଲା ।

ପ୍ରଥମେ ସେ ଡ଼କେଇ ପଠେଇଲେ ପାର୍କିନ୍‌ସନ୍‌ଙ୍କୁ । ତାଙ୍କୁ ପଚାରିଲେ, "ପ୍ରଶ୍ନଟି ତ ଖୁବ୍ କଷ୍ଟଥିଲା । ତୁମେ କିନ୍ତୁ ତାକୁ ଠିକ୍ ଠିକ୍ ଭାବରେ ସମାଧାନ କରି ଉତ୍ତର ଦେଲ କେମିତି ?"

ପାର୍କିନ୍‌ସନ୍ ବଡ଼ ନମ୍ରତାର ସହ ଉତ୍ତର ଦେଲେ, "ସାର୍, ମୁଁ ବେଳେ ବେଳେ ପଢ଼ାବହିକୁ ଛାଡ଼ି ଗବେଷଣା-ପତ୍ରପତ୍ରିକା ମଧ୍ୟ ପଢ଼ିଥାଏ । ଥରେ ଗୋଟିଏ ପତ୍ରିକାରୁ ମୁଁ ସେହି ପ୍ରଶ୍ନର ଉତ୍ତର ପଢ଼ି ମନେ ରଖିଥିଲି । ଅବିକଳ ସେହି ପ୍ରଶ୍ନଟି ଆମ ପରୀକ୍ଷାରେ ପଡ଼ିଥିବାରୁ ମୁଁ ମନେ ପକେଇ ତାର ଉତ୍ତର ଲେଖିଦେଲି ।"

ପରୀକ୍ଷକ ଜଣକ ପତ୍ରିକାର ନାଁ ଜାଣିବାକୁ ଚାହିଁବାରୁ ପତ୍ରିକାଟିର ନାଆଁ ତାଙ୍କୁ କହିଦେଲେ ପାର୍କିନ୍‌ସନ୍ । ଏହା ଶୁଣି ଖୁବ୍ ଖୁସୀ ହୋଇଗଲେ ପରୀକ୍ଷକ ଜଣକ । କାରଣ ସେ ନିଜେ ସେହି ପତ୍ରିକାଟିରୁ ହିଁ ପ୍ରଶ୍ନଟି ସଂଗ୍ରହ କରି ପରୀକ୍ଷାରେ ପଚାରିଥିଲେ ।

ସେ ପାର୍କିନ୍‌ସନଙ୍କୁ ଖୁବ୍ ପ୍ରଶଂସା କଲେ । ସିଲାବସ୍ ବାହାରକୁ ଯାଇ ନୂଆ ନୂଆ ବିଷୟରେ ଜାଣିବାର ଚେଷ୍ଟା କରିବା ଅତି ଆନନ୍ଦର କଥା ବୋଲି କହି ତାଙ୍କୁ ସାବାସି ଦେଲେ । ତାଙ୍କ ପିଠି ଥାପୁଡ଼େଇ ତାଙ୍କୁ ବିଦାୟ ଦେଲେ । ତା ପରେ ଡ଼କେଇ ପଠେଇଲେ ଥମ୍‌ସନ୍‌ଙ୍କୁ । ସେତେବେଳକୁ ସେ ଧରିନେଇଥାଆନ୍ତି ଯେ ଥମ୍‌ସନ୍ ହିଁ ପାର୍କିନ୍‌ସନ୍‌ଙ୍କ ଖାତାରୁ ଉତ୍ତର କପି କରିଛନ୍ତି ।

ତେଣୁ, ଥମ୍‌ସନ୍‌ଙ୍କୁ ଦେଖିବାମାତ୍ରେ ଅତି ରାଗିଯାଇ ପଚାରିଲେ, ''ମୁଁ ଜାଣିବାକୁ ଚାହୁଁଛି ଯେସେହି ପ୍ରଶ୍ନଟିର ଠିକ୍ ଉତ୍ତର ତୁମେ ଦେଇପାରିଲ କିପରି ? ମୁଁ ପାରକିନ୍‌ସନ୍‌ଙ୍କୁ ମଧ ଠିକ୍ ଏହି ପ୍ରଶ୍ନଟି ପଚାରିଲି । ସେ ଉତ୍ତର ଦେଲେ ଯେ ଗୋଟିଏ ଗବେଷଣା ପ୍ରବନ୍ଧରୁ ସେ ଏହାର ସମାଧାନ ପଢ଼ିବାକୁ ପାଇଥିଲେ । ତୁମେ ବି ସେହି ପ୍ରବନ୍ଧଟି ପଢ଼ିଥିଲ ବୋଲି କହି ମୋତେ ଠକିବାକୁ ଚେଷ୍ଟା କରନା ।''

ଥମ୍‌ସନ୍ ଅତି ବିନୀତ ଭାବରେ ଉତ୍ତର ଦେଲେ, ''ନା ସାର୍, ମୁଁ ଆପଣଙ୍କୁ ଠକିବାକୁ ଆଦୌ ଚେଷ୍ଟା କରୁନି । ମୁଁ ନିଜେ ହିଁ ସେହି ପ୍ରବନ୍ଧଟିର ଲେଖକ ।''

ଏହାଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ପରୀକ୍ଷକ । ଆନନ୍ଦରେ କୁରୁଳି ଉଠି ବାରମ୍ବାର ଆଲିଙ୍ଗନ କରିବାକୁ ଲାଗିଲେ ଥମ୍‌ସନ୍‌ଙ୍କୁ ।

ସେହି ଥମ୍‌ସନ୍ ତାଙ୍କ ଜୀବନରେ ଖୁବ୍ ଉନ୍ନତି କରିଥିଲେ । ଜଣେ ଉଚ୍ଚକୋଟୀର ଗଣିତଜ୍ଞ ଏବଂ ପଦାର୍ଥ ବିଜ୍ଞାନୀ ଭାବରେ ପୃଥିବୀରେ ଖୁବ୍ ନାଁ କମେଇଥିଲେ । ମୃତ୍ୟୁପରେ ବିଖ୍ୟାତ ବୈଜ୍ଞାନିକ ସାର୍ ଆଇଜାକ୍ ନିଉଟନ୍‌ଙ୍କ ସମାଧି ନିକଟରେ ତାଙ୍କ ସମାଧି ଦିଆହୋଇଥିଲା ।

କିନ୍ତୁ ପାର୍‌କିନ୍‌ସନ ? କଅଣ ହେଲା ତାଙ୍କର ଭବିଷ୍ୟତ ? ଇତିହାସ ପାର୍କିନ୍‌ସନ୍‌ଙ୍କର କୌଣସି ଖୋଜଖବର ରଖିନି । ପରୀକ୍ଷାରେ ପ୍ରଥମ ହୋଇଗଲେ ଯେ ଭବିଷ୍ୟତ ଉଜ୍ଜ୍ୱଳ, ଏଭଳି ଧାରଣା କରିନେବା ସବୁବେଳେ ଠିକ୍ ନୁହେଁ ।

ଆଉ ଗୋଟିଏ ଉଦାହରଣ । ବିଶ୍ୱବିଖ୍ୟାତ ପଦାର୍ଥ ବିଜ୍ଞାନୀ ଜେମ୍‌ସ୍ କ୍ଲର୍କ ମ୍ୟାକ୍ସୱେଲଙ୍କ କଥା । କ୍ଲାସରେ ଫାଷ୍ଟ୍ ହେବେ ବୋଲି ତାଙ୍କ ମନରେ କୌଣସି ସନ୍ଦେହ ନ ଥିଲା । ଏ ବିଷୟରେ ସେ ଏପରି ନିଶ୍ଚିନ୍ତ ଥିଲେ ଯେ ପରୀକ୍ଷାଫଳ ବାହାରିବା ଦିନ ନିଜେ କଲେଜକୁ ନ ଯାଇ ପରୀକ୍ଷାଫଳ ବୁଝିଆସିବା ପାଇଁ ପଠେଇଥିଲେ ତାଙ୍କ ଚାକରକୁ । କିନ୍ତୁ, ତାଙ୍କ ପରୀକ୍ଷାଫଳ ବୁଝିବାପାଇଁ ନୁହେଁ ଚାକରକୁ କହିଲେ, ''ଯାଇ

ବୁଝିଆ ତ ପରୀକ୍ଷାରେ କେଉଁ ପିଲାଟି ଦ୍ୱିତୀୟ ସ୍ଥାନ !'' କାରଣ ଶ୍ରେଣୀରେ ବହୁ ସହପାଠୀ ପ୍ରଥମସ୍ଥାନ ଅଧିକାର କରିବା ନିମନ୍ତେ ମ୍ୟାକ୍ସ୍‌ୱେଲଙ୍କ ସହ ପ୍ରତିଯୋଗିତା ଚଳେଇଥିଲେ । ସେମାନଙ୍କ ମଧ୍ୟରୁ କେଉଁଜଣକ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବ, ତାହା ହିଁ ଜାଣିବାରେ ତାଙ୍କର କୌତୂହଳ ଥିଲା ।

ପରୀକ୍ଷା ଫଳ ଦେଖିସାରି କିଛି ସମୟ ପରେ ଆସି ମ୍ୟାକ୍ସ୍‌ୱେଲ୍‌ଙ୍କ ସାମନାରେ ହାଜର ହେଲା ଚାକରଟି । ମ୍ୟାକ୍ସ୍‌ୱେଲ ପଚାରିଲେ, ''କିରେ, କିଏ ଦ୍ୱିତୀୟ ହୋଇଛି ?''

ଚାକରଟି ଡ଼ରି ଡ଼ରି ଉତ୍ତର ଦେଲା, ''ଆପଣ, ଆଜ୍ଞା ।''

ସେ'ଦିନର ସେହି ଖବର ମ୍ୟାକ୍ସ୍‌ୱେଲଙ୍କୁ ଖୁବ୍ ଦୁଃଖ ଦେଇଥିବ । ପରୀକ୍ଷାରେ 'ପ୍ରଥମ' ହୋଇ ନ ପାରିବାରୁ ବଡ଼ ନିରାଶ ହୋଇପଡ଼ିଥିବେ ସେ । କିନ୍ତୁ, ଭବିଷ୍ୟତରେ ଜଣେ ପଦାର୍ଥବିଜ୍ଞାନୀ ଭାବରେ ଯେ ସେ ପୃଥିବୀରେ ଖୁବ୍ ନାଁ କରିବେ, ସେ କଥା କଣ ସେଦିନ ତାଙ୍କୁ ଜଣା ଥିଲା ?

ତେଣୁ, ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ନ ପାରିଲେ ଯେ ଜୀବନରେ ସବୁ କିଛି ହରେଇ ବସିଲେ - ଏଭଳି ଭାବିନେବା ପୂରାପୂରି ଭୁଲ୍ । କଠିନ ପରିଶ୍ରମ କରି ଏବଂ ପାଠ ମୁଖସ୍ଥ କରି କରି ପରୀକ୍ଷାରେ ଫାଷ୍ଟ ହେଉଥିବା ଛାତ୍ରମାନଙ୍କର ସଂଖ୍ୟା କିଛି କମ୍ ନୁହେଁ । କିନ୍ତୁ, ସେମାନଙ୍କ ମଧ୍ୟରୁ ଅନେକ ସେହି ସଫଳତାକୁ ବଜାୟ ରଖିପାରି ନ ଥିବାର ବହୁ ଉଦାହରଣ ଦେଖିବାକୁ ମିଳେ ।



# ମନେ ରଖିବାର ଚିଠିଟିଏ

ଲୋହିତ ଭାରତୀୟମାନେ ହିଁ ଥିଲେ ଉତ୍ତର ଆମେରିକାର ମୂଳ ବାସିନ୍ଦା । ପରେ ସେଠାରେ ପହଞ୍ଚିଗଲେ ଗୋରା ସାହେବମାନେ । ସେମାନେ ଲୋହିତ ଭାରତୀୟଙ୍କୁ ତଡ଼ି ଦେଇ ସେମାନଙ୍କ ଜମିବାଡ଼ିକୁ ମାଡ଼ି ବସିଲେ । ଏହା ବଦଳରେ, ଇଚ୍ଛା ହେଲେ ସେମାନଙ୍କୁ କିଛି କିଛି ଟଙ୍କା ପଇସା ଦେଉଥିଲେ, ଇଚ୍ଛା ନ ହେଲେ ନାହିଁ ।

ଲୋହିତ ଭାରତୀୟମାନଙ୍କ ଭିତରେ ରହିଥିଲେ ସୁକୁଆମିଶ୍ ନାମକ ଗୋଟିଏ ଆଦିବାସୀ ଜାତି । ୧୮୦୦ ମସିହା ପାଖାପାଖି ସମୟରେ ସିଟ୍‌ଲ୍ ବୋଲି ଜଣେ ଲୋକ ସୁକୁଆମିଶ୍‌ମାନଙ୍କର ମୁଖିଆ ଥିଲେ । ଆମେରିକା ସରକାରଙ୍କ ପାଖକୁ ସେ ଲେଖିଥିଲେ ଚିଠିଟିଏ । ମଣିଷ ଆଉ ପ୍ରକୃତି ଭିତରେ ରହିଥିବା ସଂପର୍କ ବିଷୟରେ ଅତି ମନଛୁଆଁ କଥା ଗୁଡ଼ିକ ସେହି ଚିଠିରେ ଲେଖାଥିଲା ।

ସିଟଲ୍ ଲେଖିଥିଲେ -

''ଆମେରିକାର ରାଷ୍ଟ୍ରପତି ୱାଶିଙ୍ଗଟନ୍‌ରୁ ଆମପାଖକୁ ଖବର ପଠେଇଛନ୍ତି ଯେ ସେ ଆମ ଭିଟାମାଟିକୁ କିଣିନେବାକୁ ଚାହାଁନ୍ତି । କହତ ଭଲା, ଆକାଶକୁ କଣ ବିକି ହବ ନା କିଣି ହବ ? ଭିଟାମାଟି କି ଜମିବାଡ଼ିକୁ ଅବା କିଣାବିକା କରି ହେବ କେମିତି ? ଏ'ସବୁ କଥା ତ ଆମ ମୁଣ୍ଡରେ ପଶୁନି । ଆମେ କଣ ପବନର ମାଲିକ ନାଁ ପାଣିର ମାଲିକ ? ଆମେ ଯଦି ପାଣି ଆଉ ପବନର ମାଲିକ ନୋହୁଁ, ତେବେ ଆମେ ତାକୁ ବିକିବାକୁ କିଏ ? ତୁମେ ତାକୁ କିଣିବାକୁ କିଏ ?

ଆମ ରାଇଜର ପ୍ରତି ମାଟିମୁଠା ମୋ ଲୋକଙ୍କ ପାଇଁ ପବିତ୍ର । ପାଇନ୍‌ଗଛର ପ୍ରତ୍ୟେକ ପତ୍ର, ସମୁଦ୍ର ବେଳାର ପ୍ରତି ବାଲିକଣା, ଘଞ୍ଚ ଜଙ୍ଗଲର କାକରବିନ୍ଦୁ, ଘାସ ପଡ଼ିଆ ଏବଂ ଗୁଣୁଗୁଣୁ ଶବ୍ଦ କରୁଥିବା ପ୍ରତ୍ୟେକ କୀଟପତଙ୍ଗ ହେଉଛି ଆମର ଅତି ନିଜର । ଆମ ପାଇଁ ଏଗୁଡ଼ିକ ଖୁବ୍ ପବିତ୍ର । ଆମେ ଏଗୁଡ଼ିକୁ ଖୁବ୍ ସମ୍ମାନ ଦେଇଥାଉ । ପ୍ରାଣ ଦେଇ ଭଲପାଉ । ଭକ୍ତି କରୁ ।

ଗଛଗୁଡ଼ିକ ଭିତରେ ଚଳାଚଳ କରୁଥିବା ରସ ଆଉ ଆମ ଶିରାରେ ଚଳାଚଳ କରୁଥିବା ରକ୍ତ ଆମର ଅତି ପରିଚିତ । ଆମେ ମାଟିରୁ ଜାତ ହୋଇଛୁ । ମରିଗଲା ପରେ ପୁଣି ସେହି ମାଟିରେ ମିଶିଯାଉଛୁ । ତେଣୁ, ଆମେ ମାଟି ମା'ର ଅଂଶ । ସେ ମଧ୍ୟ ଆମର ଅଂଶ । ସୁବାସ ଦେଉଥିବା ଫୁଲଗୁଡ଼ିକ ହେଉଛନ୍ତି ଆମର ଭଉଣୀ । ଭାଲୁ, ହରିଣ, ଇଗଲ୍ ଇତ୍ୟାଦି ହେଉଛନ୍ତି ଆମର ଭାଇ । ପାହାଡ଼ ପର୍ବତର ଚୂଡ଼ା, ଘାସ ଉପରେ ଚକ୍‌ମକ୍ କରୁଥିବା ଶିଶିର, ତନ୍ଦୁ ଘୋଡ଼ା ଦେହର ଉଷୁମ ଏବଂ ମଣିଷଜାତି - ଏ' ସମସ୍ତ ହେଉଛନ୍ତି ଗୋଟିଏ ପରିବାର ।

ଝରଣା ଆଉ ନଈରେ ବହି ଯାଉଥିବା କାଚକେନ୍ଦୁ ଜଳକୁ ଖାଲି ଜଳ ବୋଲି ଭାବି ନିଅନି । ସେ ତ ଆମ ପୂର୍ବପୁରୁଷଙ୍କର ରକ୍ତ । ଆମେ ଯଦି ଆମ ଭିଟାମାଟିକୁ ତୁମକୁ ବିକି ଦେଉ, ମନେ ରଖିଥିବ ଯେ ଏହାର ପ୍ରତ୍ୟେକ ଅଂଶ ହେଉଛି ଅତି ପବିତ୍ର । ହ୍ରଦର ନିର୍ମଳ ଜଳର ପ୍ରତ୍ୟେକ ପ୍ରତିଫଳନ ମୋ ଜାତିଭାଇଙ୍କର ଜୀବନ ସ୍ମୃତି ଏବଂ ଘଟଣାଗୁଡ଼ିକର କାହାଣୀ ହିଁ କହିଚାଲିଛି । ଜଳର କୁଳୁକୁଳୁ ଶବ୍ଦରେ ଆମେ ଶୁଣିପାରୁ ଆମ ବାପା ଦାଦାଙ୍କର କଣ୍ଠସ୍ୱର ।

ନଦୀଗୁଡ଼ିକ ହେଉଛନ୍ତି ଆମର ଭାଇ । ସେମାନେ ଆମର ଶୋଷ ମେଣ୍ଟାଇଥାନ୍ତି । ଗୋଟିଏ ଜାଗାରୁ ଅନ୍ୟ ଗୋଟିଏ ଜାଗାକୁ ବାହି ନିଅନ୍ତି ଆମର ହୁଲି ଡଙ୍ଗା ଗୁଡ଼ିକୁ । ସେମାନେ ହିଁ ଆମ ପିଲାଙ୍କ ପାଟିରେ ଦେଇଥାଆନ୍ତି ଆହାର । ତେଣୁ, ତୁମେ ଯଦି ଆମ ରାଇଜକୁ ନେଇଯାଅ, ତେବେ ଆମ ନଦୀଗୁଡ଼ିକୁ ଆଦୌ ହତାଦର କରିବନି । ନିଜ ଭାଇମାନଙ୍କୁ ଯେଉଁଭଳି ସ୍ନେହଶ୍ରଦ୍ଧା ଆଉ ଦୟା ଦେଖାଉଛ । ଠିକ୍ ସେହିପ୍ରକାରେ ସେଗୁଡ଼ିକ ଉପରେ ମଧ୍ୟ ଦୟା ରଖିବ ।

ଆମେ ଯଦି ଆମ ଅଞ୍ଚଳକୁ ତୁମକୁ ବିକି ଦେଉ, ତେବେ ମନେ ରଖିଥିବ ଯେ ଏହାର ବାୟୁ ଆମ ପାଇଁ ଅତି ମୂଲ୍ୟବାନ । କାରଣ, ଏଠାକାର ପ୍ରତ୍ୟେକ ଜୀବର ଆତ୍ମା ରହିଛି ସେହି ବାୟୁରେ । ଆମ ଅଜାମାନେ ସେହି ବାୟୁରୁ ନେଇଥିଲେ ତାଙ୍କର ପ୍ରଥମ ପ୍ରଶ୍ୱାସ, ଶେଷ ନିଃଶ୍ୱାସ ମଧ୍ୟ ଛାଡ଼ିଥିଲେ ସେହି ବାୟୁ ଭିତରକୁ । ଆମ ପିଲାମାନଙ୍କର ଜୀବନ ଧାରଣର ଦାୟିତ୍ୱ ମଧ୍ୟ ସେହି ବାୟୁ ଉପରେ ନ୍ୟସ୍ତ । ତେଣୁ, ଆମେ ଯଦି ଆମ ଭୂଇଁକୁ ତୁମକୁ ବିକିଦେଉ । ତେବେ ଏଇ ଭୂଇଁକୁ ସମ୍ମାନ ଦେଇ ତାର ପବିତ୍ରତାକୁ ଅକ୍ଷୁର୍ଣ୍ଣ ରଖିବ । ଏହା ଫଳରେ, ଏହାର ବଣବିଲରେ ଫୁଟୁଥିବା ଫୁଲର ବାସ୍ନାକୁ ଆମେ ବାରିପାରିବୁ । ଚାଖି ପାରିବୁ ।

ଆମେ ଆମ୍ଭମାନଙ୍କ ପୁଅଝିଅ, ନାତିନାତୁଣୀମାନଙ୍କୁ ଯାହା ଯାହା ଶିଖାଇଥାଉ, ତୁମେ କଣ ତୁମ ପୁଅଝିଅ ଆଉ ନାତିନାତୁଣୀଙ୍କୁ ସେଇଆ ଶିଖେଇବ ? ତୁମେ କଣ ସେମାନଙ୍କୁ ଶିଖେଇବ ଯେ ଏଇ ପୃଥିବୀ ହେଉଛି ଆମର ମାଆ ? ତୁମେ କଣ ଶିଖେଇବ ଯେ ସେମାନଙ୍କ ହାତରେ ପୃଥିବୀମାଆ ଯେଉଁ ଦଶା ଭୋଗିବ, ସେହି ଦଶା ସେମାନେ ମଧ୍ୟ ଭୋଗିବାକୁ ବାଧ୍ୟ ହେବେ ବୋଲି ?

ଆମେ ସୁକ୍ୱଆମିଶ ଜାତି ଜାଣିଛୁ ଯେ ମଣିଷ ପୃଥିବୀର ମାଲିକ ନୁହେଁ ବରଂ, ପୃଥିବୀ ହେଉଛି ମଣିଷ ଜାତିର ମାଲିକ । ଆମ ଭିତରେ, ରହିଥିବା ରକ୍ତ ସଂପର୍କ ଭଳି ପୃଥିବୀର ସବୁ ସଜୀବ ଆଉ ନିର୍ଜୀବ ସାଂଗରେ ଆମେ ନିବିଡ଼ ସଂପର୍କରେ ବନ୍ଧା । ଜୀବନ-ଜାଲକୁ ମଣିଷ ବୁଣିନି । ସେ କେବଳ ସେହି ଜାଲର ସୂତାଖିଅଟିଏ ମାତ୍ର । ତେଣୁ, ଜାଲଟି ପ୍ରତି ସେ ଯେଉଁ ପ୍ରକାରର ବ୍ୟବହାର ଦେଖେଇବ, ସେହି ପ୍ରକାରର ବ୍ୟବହାର ତାହା ପାଇଁ ମଧ୍ୟ ଥୁଆ ।''

ଦୁଇଶହ ବର୍ଷ ତଳେ ସିଟ୍‌ଲଙ୍କ ଚିଠିଟିରେ ଯାହା ଯାହା ଲେଖାଥିଲା, ତାହା ଆଜି ବି ସଂପୂର୍ଣ୍ଣ ପ୍ରଯୁଜ୍ୟ । ପରିବେଶକୁ ଯତ୍ନରେ ନ ରଖିଲେ, ମଣିଷ ଜାତିକୁ ହିଁ କ୍ଷତି ସହିବାକୁ ପଡ଼ିବ ।

ସୁକୁଆମିଶ୍ ଜାତିର ମୁଖିଆ ସିଟ୍‌ଲଙ୍କ ନାଆଁ ଅନୁସାରେ ଓ୍ୱାଶିଂଟନ୍‌ର ସିଟ୍‌ଲ ନଗରୀର ନାମକରଣ କରାଯାଇଛି ।



# ଆମ ରାଷ୍ଟ୍ରପତିଙ୍କ ମହତ୍ ପଣିଆଁ

ବର୍ତ୍ତମାନ ମାନ୍ୟବର ଶ୍ରୀଯୁକ୍ତ ଏ.ପି.ଜେ. ଅବଦୁଲ୍ କାଲାମ୍ ହେଉଛନ୍ତି ଆମ ଦେଶର ରାଷ୍ଟ୍ରପତି । ସେ ଅତି ସରଳ ଆଉ ସାଦାସିଧା । ସେ ବାହା ହୋଇନାହାଁନ୍ତି । ସେ ପୁଣି ଆଇଁଷ ନ ଖାଇ ନିରାମିଷାଶୀ ।

ଆମ ଦେଶକୁ କ୍ଷେପଣାସ୍ତ୍ର ଶକ୍ତିରେ ଆତ୍ମନିର୍ଭରଶୀଳ କରିବାରେ ତାଙ୍କର ଅବଦାନ ବହୁତ ବେଶୀ । ତେଣୁ, ତାଙ୍କୁ 'କ୍ଷେପଣାସ୍ତ୍ର ମାନବ' ବୋଲି ଭାରତୀୟମାନେ କହିଥାନ୍ତି । ତାଙ୍କର ସଫଳତା ପାଇଁ ସେ ନିଜେ ବଡ଼େଇ କରନ୍ତିନି । ସେ କହନ୍ତି, ''କ୍ଷେପଣାସ୍ତ୍ରର ବିକାଶରେ ଆମେ ଯେଉଁ ସଫଳତା ପାଇଛୁ, ସେଥିରେ ଆମ ସଂସ୍ଥାର ସାଧାରଣ ପିଅନ୍‌ଙ୍କଠାରୁ ଆରମ୍ଭ କରି ନିର୍ଦ୍ଦେଶକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଭାଗ ରହିଛି ।'' ଏହାକୁ ମଧ୍ୟ ନିଜ ଆଚରଣରେ ପ୍ରମାଣ କରିଛନ୍ତି ସେ ।

୧୯୮୯ ମସିହା ମେ' ୨୨ ତାରିଖ । ସେଦିନ ଆମ ପ୍ରଦେଶର ବାଲେଶ୍ୱରଠାରେ ଥିବା କ୍ଷେପଣାସ୍ତ୍ର ପରୀକ୍ଷଣ କେନ୍ଦ୍ରରୁ ଆକାଶକୁ ଲମ୍ଫ ପ୍ରଦାନ କଲା ପ୍ରଥମ 'ଅଗ୍ନି' କ୍ଷେପଣାସ୍ତ୍ର । ଏହି ପରୀକ୍ଷା ସଫଳ ହେଲା । ଦେଶର ଚାରିଆଡୁ ଛୁଟିଲା ଅଭିନନ୍ଦନର ସୁଅ ।

ସେତେବେଳେ ଆନନ୍ଦ ପାର୍ଥସାରଥି ଥାଆନ୍ତି 'ହିନ୍ଦୁ' ନାମକ ଇଂରାଜୀ ଖବରକାଗଜର ଜଣେ ସାମ୍ବାଦିକ । ପାର୍ଥସାରଥି ଡ଼କ୍ଟର କାଲାମ୍‌ଙ୍କୁ ବଧେଇ ଜଣେଇଲେ ଏବଂ କ୍ଷେପଣାସ୍ତ୍ର ପରୀକ୍ଷାର ସଫଳତା ସମ୍ବନ୍ଧରେ କାଲାମ୍‌ଙ୍କର ମତାମତ ଜାଣିବାକୁ ଚାହିଁଲେ ।

ଏହାର ଉତ୍ତରରେ କାଲାମ୍ କହିଥିଲେ, ''ଦେଖନ୍ତୁ, ଆପଣଙ୍କ ଖବର କାଗଜରେ ମୋ କଥା କିଛି ଲେଖିବେନି । ଏହି ସଫଳତାର ପଛରେ ରହିଛି ଦୁଇହଜାରରୁ ଅଧିକ ବ୍ୟକ୍ତିଙ୍କ ଦିନରାତି ଝାଳବୁହା ପରିଶ୍ରମ । 'ଅଗ୍ନି'କୁ ଆକାଶରେ ଉଡ଼େଇବା ପାଇଁ ମୋ ଲୋକମାନେ କି କଷ୍ଟ ସହିଛନ୍ତି ଏବଂ କି ତ୍ୟାଗ କରିଛନ୍ତି, ତାହା ଆପଣ ଧାରଣା କରିପାରିବେନି ।''

"ଆପଣ ଯଦି ଖବରକାଗଜରେ କିଛି ଲେଖିବେ ବୋଲି ଭାବୁଛନ୍ତି, ତେବେ ମୋ ପାଖରେ କେଉଁ ଚରିତ୍ରର ଲୋକେ କାନ୍ଧକୁ କାନ୍ଧ ମିଳେଇ କାମରେ ଲାଗିଛନ୍ତି, ସେଇମାନଙ୍କ ବିଷୟ ଲେଖିବେ । ଆପଣଙ୍କ ପାଠକମାନଙ୍କୁ ନିଶ୍ଚୟ ଜଣେଇବେ ଭି.ଆର୍. ନାଗରାଜନ୍‌ଙ୍କ କଥା ।"

ଏହାପରେ ପ୍ରାୟ ଦଶମିନିଟ୍ ଧରି ସେ ବଖାଣି ଚାଲିଲେ ଗୋଟିଏ ଘଟଣା । ସେ କହିଲେ, "ସେତେବେଳେ ପ୍ରଚଣ୍ଡ ଗରମ । 'ଅଗ୍ନି' କ୍ଷେପଣାସ୍ତ୍ରକୁ ପରୀକ୍ଷା କରିବାପାଇଁ ନାନା ପ୍ରକାରର ଅସୁବିଧା ଉପୁଜୁଥାଏ । ତେଣୁ, ବାରମ୍ବାର ସ୍ଥଗିତ ରଖିବାକୁ ହେଉଥାଏ ଉକ୍ତ ପରୀକ୍ଷାକୁ । କ୍ଷେପଣାସ୍ତ୍ରର ବିଦ୍ୟୁତ୍ ସଂଯୋଗ କଥା ଯେଉଁମାନେ ବୁଝୁଥାଆନ୍ତି । ସେହି ଦଳରେ ଥାଆନ୍ତି ନାଗରାଜନ୍ । ଦୀର୍ଘ ଦୁଇମାସ ଧରି ପାଞ୍ଚଶହରୁ ବେଶୀ ବ୍ୟକ୍ତି ବାଲେଶ୍ୱରର ଚାନ୍ଦିପୁରରେ କାର୍ଯ୍ୟବ୍ୟସ୍ତ ରହିଥାନ୍ତି ।"

"ନାଗରାଜନ୍‌ଙ୍କ ପରିବାର ରହୁଥାନ୍ତି ହାଇଦ୍ରାବାଦ୍‌ରେ । ତାଙ୍କ ପୁଅ ହଠାତ୍ ଅସୁସ୍ଥ ହୋଇପଡ଼ିଲା । ନାଗରାଜନ୍‌ଙ୍କ ଅନୁପସ୍ଥିତିରେ ସବୁ ଦାୟିତ୍ୱ ତୁଲେଇବାକୁ ପଡୁଥାଏ ତାଙ୍କ ସ୍ତ୍ରୀଙ୍କୁ । ଦୁଇ ତିନି ଦିନ ଅନ୍ତରରେ ଘରକୁ ଟେଲିଫୋନ୍ କରି ରୋଗଣା ପୁଅର ଭଲମନ୍ଦ ଖବର ନେଉଥାଆନ୍ତି ନାଗରାଜନ୍ । ଏପ୍ରିଲ୍ ମାସର ମଝିଆମଝି ସମୟରେ ନାଗରାଜନ୍ ସ୍ତ୍ରୀଙ୍କୁ ପ୍ରସ୍ତାବ ଦେଲେ ଯେ ସେ ହାଇଦ୍ରାବାଦ୍ ଫେରିଯାଇ ପୁଅର ଦେଖାଶୁଣା କରିବେ । କିନ୍ତୁ, ତାଙ୍କ ସ୍ତ୍ରୀ ଏହି ପ୍ରସ୍ତାବରେ ରାଜି ହେଲେନି । ସେ କହିଲେ, ପୁଅର ଅସୁସ୍ଥତା କଥା ତୁମେ ଆଦୌ ଚିନ୍ତା କରନି । ତାର କୌଣସି ଅଣହେଳା ହେବନି । କିନ୍ତୁ, 'ଅଗ୍ନି' କ୍ଷେପଣାସ୍ତ୍ର ପଠାଇବା କାମରେ ତୁମର ହେଳା ମୋର ଆଦୌ ପସନ୍ଦ ନୁହେଁ । ତୁମର ହାଇଦ୍ରାବାଦ ଆସିବା ଆଦୌ ଦରକାର ନାହିଁ । ତୁମେ 'ଅଗ୍ନି' ଦାୟିତ୍ୱ ବୁଝ, ମୁଁ ବୁଝୁଛି ପୁଅର ଦାୟିତ୍ୱ ।"

"ଦୁଇ ତିନି ଦିନ ପରେ ଘରକୁ ପୁଣି ଟେଲିଫୋନ୍ କଲେ ନାଗରାଜନ୍ । ଏଥରକ ଟେଲିଫୋନ୍ ଧରିଲେ ୮୨ ବର୍ଷ ବୟସ୍କ ତାଙ୍କର ବାପା । ସେ ବି ଦୋହରେଇଲେ ଯେ ସେଠାରେ ସବୁକିଛି ଠିକ୍‌ଠାକ୍ ଚାଲିଛି । ତେଣୁ, ଚିନ୍ତା କରିବା ଦରକାର ନାହିଁ ।

"କିନ୍ତୁ, ବାପାଙ୍କର ରହି ରହି କଥାବାର୍ତ୍ତା କରିବା ଢଙ୍ଗରୁ ନାଗରାଜନ୍‌ଙ୍କ ମନରେ ସନ୍ଦେହ ହେଲା । କିଛି ନା କିଛି ଅସୁବିଧା ହୋଇଥିବାର ଅନୁମାନ କଲେ ସେ । 'କଅଣ ହୋଇଛି' ସତ ସତ କହିବା ନିମନ୍ତେ ସେ ନେହୁରା ହେଲେ ବାପାଙ୍କୁ । ବାପା ଅବା ଆଉ କରନ୍ତେ କଅଣ ? ସତ ମାନି ଯିବା ବ୍ୟତୀତ ତାଙ୍କର ଅନ୍ୟ ଚାରା ନ ଥିଲା ।

ସେ ଜଣେଇଲେ ଯେ ନାଗରାଜନଙ୍କ ଭିଣୋଇ ଭେଙ୍କଟରାମନ୍ କର୍ଣ୍ଣାଟକ ଏକ୍ସପ୍ରେସ ରେଳ ଦୁର୍ଘଟଣାରେ ପ୍ରାଣ ହରାଇଛନ୍ତି । ସେହିଦିନ ହିଁ ତାଙ୍କ ଶବକୁ ଚିହ୍ନଟ କରାଯାଇପାରିଛି । ତେବେ, ଏ ବିଷୟ ନାଗରାଜନ୍‌ଙ୍କୁ ନ ଜଣେଇବା ପାଇଁ ତାଙ୍କ ବାପା ଏବଂ ସ୍ତ୍ରୀ ନିଷ୍ପତ୍ତି ନେଇଥିଲେ । କାରଣ, ଏହି ଖବର ପାଇଲେ 'ଅଗ୍ନି' କ୍ଷେପଣାସ୍ତ୍ର ପ୍ରେରଣ କାମରେ ସେ ହୁଏତ ମନ ଲଗେଇ ପାରିବେ ନାହିଁ ।''

''ହେଲେ, ଏ ଖବର ଲୁଚି ରହି ପାରିଲାନି । ମୁଁ ବାଧ୍ୟ କରି କେଇଟା ଦିନ ପାଇଁ ନାଗରାଜନ୍‌ଙ୍କୁ ହାଇଦ୍ରାବାଦ୍ ପଠେଇ ଦେଲି । କିନ୍ତୁ, କ୍ଷେପଣାସ୍ତ୍ର ପ୍ରେରଣ ପୂର୍ବରୁ ସେ ଆସି ପୁଣି ଆମ ଗହଣରେ ହାଜର ହୋଇଯାଇଥିଲେ ।''

''କହନ୍ତୁ ତ, ଏଭଳି ଲୋକଙ୍କ ଅବଦାନ ତୁଳନାରେ ମୋ ଅବଦାନ କଣ ଅଧିକ ମୂଲ୍ୟବାନ ?''

ଡ଼କ୍ଟର କାଲାମ୍ ଏବଂ ଡ଼ି.ଆର୍.ଡ଼ି.ଓ.ର ମୁଖ୍ୟ ଡ଼କ୍ଟର ଭି.ଏସ୍. ଅରୁଣାଚଳମ୍‌ଙ୍କ ପ୍ରଚେଷ୍ଟାରେ 'ଅଗ୍ନି' କ୍ଷେପଣାସ୍ତ୍ର ପ୍ରେରଣର ସଫଳତା ପାଇଁ ସମସ୍ତଙ୍କର ଅବଦାନକୁ ସ୍ୱୀକାର କରାଯାଇଥିଲା । ସାରା ଦେଶରେ ଏହି କାମରେ ନିୟୋଜିତ କୋଡ଼ିଏରୁ ଉର୍ଦ୍ଧ୍ୱ ସଂସ୍ଥାର ପିଅନଙ୍କଠାରୁ ଆରମ୍ଭ କରି ନିର୍ଦ୍ଦେଶକଙ୍କ ପର୍ଯ୍ୟନ୍ତ - ପ୍ରତ୍ୟେକଙ୍କୁ ଦିଆଯାଇଥିଲା ଏକ ହଜାର ଟଙ୍କା ଲେଖାଁଏ ଆର୍ଥିକ ପୁରସ୍କାର ଏବଂ ଗୋଟିଏ ଲେଖାଁଏ ମାନପତ୍ର ।

ଏହିଭଳି ମହାନ୍ ଚରିତ୍ରର ଅଧିକାରୀ ହେଉଛନ୍ତି ଆମର ପ୍ରିୟ ରାଷ୍ଟ୍ରପତି ଡ଼କ୍ଟର ଏ.ପି.ଜେ. ଅବଦୁଲ୍ କାଲାମ୍ ।



# କବି ହେଉ ହେଉ ବୈଜ୍ଞାନିକ

ତୁମମାନଙ୍କ ମଧ୍ୟରୁ କେହି କେହି ସାର୍ ହମ୍ଫ୍ରେ ଡ଼ାଭିଙ୍କ ନାଁ ଶୁଣିଥିବ । ସେ ଥିଲେ ଜଣେ ବୈଜ୍ଞାନିକ । ରସାୟନ ବିଜ୍ଞାନ ବିଷୟରେ ସେ ଗବେଷଣା କରିଥିଲେ । ଏହି ଗବେଷଣା କରି ସେ ଅଲଗା କରିପାରିଥିଲେ ସୋଡ଼ିଅମ୍ ଆଉ ପୋଟାସିଅମ୍ ନାମକ ଧାତୁ । ୧୮୧୩ ମସିହାରେ ଆୟୋଡ଼ିନ୍ ଆବିଷ୍କାର କରିଥିଲେ ସେ ।

ସେତେବେଳେ ଖଣି ଭିତରେ କାମ କରୁଥିବା ଲୋକେ ବଡ଼ ଅସୁବିଧାରେ ପଡୁଥିଲେ । ଖଣି ଭିତରଟା ତ ଅନ୍ଧାରିଆ । ଅନ୍ଧାର ଖଣି ଭିତରେ ତ କାହା ମୁହଁ କାହାରିକୁ ଦେଖାଯାଏନି । ପୁଣି ଅନ୍ଧାରରେ ଖଣି ଭିତରେ କୋଇଲା କି ଲୁହାପଥର ଖୋଳିବାକୁ ପଡ଼ିବ । ବିଶେଷ କରି କୋଇଲା ଖଣିରେ କାମ କରିବା ଥିଲା ସବୁଠାରୁ କଷ୍ଟ । ଖଣି ଭିତରକୁ ଆଲୋକିତ କରିବା ପାଇଁ ସେମାନେ ଯେଉଁ ବତି ନେଇ ଯାଉଥିଲେ । ତାହା ଆଦୌ ନିରାପଦ ନ ଥିଲା । ବହୁ ସମୟରେ କୋଇଲା ଖଣି ଭିତରର ଗ୍ୟାସ୍‌ରେ ନିଆଁ ଲାଗିଯାଇ ଶ୍ରମିକମାନେ ମରି ଯାଉଥିଲେ । ଡ଼ାଭି ସେମାନଙ୍କର ଏହି ସମସ୍ୟା ଦୂର କରିଦେଲେ । ଖଣି ଶ୍ରମିକମାନଙ୍କ ପାଇଁ ସେ ଉଦ୍‌ଭାବନ କରିଥିଲେ ଏକ ବତି ବା ଲ୍ୟାମ୍ପ୍ । ଏହାକୁ ଡ଼ାଭିଙ୍କ ନିରାପଦ ଲ୍ୟାମ୍ପ୍ ବୋଲି କୁହାଯାଏ ।

ଡ଼ାଭି ମଧ୍ୟ ମଣିଷଠାରେ ହସ ଜାତ କରାଉଥିବା ଗ୍ୟାସ୍ ଉପରେ ଗବେଷଣା କରିଥିଲେ । ଏହି ଗ୍ୟାସର ନାଁ ନାଇଟ୍ରସ୍ ଅକ୍ସାଇଡ୍ । ଏହାକୁ ଶୁଙ୍ଘିଲେ ମନରେ ଆନନ୍ଦର ଜୁଆର ଉଠେ । ଭାରି ମଜା ଲାଗେ । କୌଣସି କାରଣ ନ ଥାଇ ଗ୍ୟାସ ଶୁଙ୍ଘିଥିବା ଲୋକ ହସି ହସି ଗଡ଼ିଯାଏ ।

ସେହି ଡ଼ାଭି ଜମା ଭଲ ପଢୁନଥିଲେ । ଶିକ୍ଷକଙ୍କ ପାଖରୁ ବେତ ବାଡ଼ିଆ ଖାଇବା ଥିଲା ତାଙ୍କର ପ୍ରତିଦିନର ଅଭ୍ୟାସ । ଏପରିକି ସେ କୌଣସି ଭୁଲ୍ ଭଟକା ନ କରିଥିଲେ ମଧ୍ୟ ଜଣେ ଶିକ୍ଷକ ସବୁଦିନେ ତାଙ୍କ ପିଚାରେ ଦି' ଚାରି ବେତ ଚଢ଼େଇ ଦେଉଥିଲେ । ସେହି ରୋଗଣା ପତଳା ଛାତ୍ରଟି ପ୍ରତି ଶିକ୍ଷକଙ୍କର ଆଦୌ ଦୟାମାୟା ନ ଥିଲା । ପୁଣି, ୨୦ ବର୍ଷ ବୟସ ପର୍ଯ୍ୟନ୍ତ ବିଜ୍ଞାନର କୌଣସି ଧାର ଧାରି ନ ଥିଲେ ଡ଼ାଭି ।

କିନ୍ତୁ, ଛାତ୍ର ଜୀବନରୁ କବିତା ଲେଖିବା ଥିଲା ତାଙ୍କର ବଡ଼ ସଉକ । ଅନ୍ୟମାନଙ୍କର କବିତାକୁ ମଧ୍ୟ ଅତି ଆଗ୍ରହରେ ପଢୁଥିଲେ ସେ । ଜଣେ ନାମଜାଦା କବି ହେବାପାଇଁ ସେ ସବୁବେଳେ ସ୍ୱପ୍ନ ଦେଖୁଥିଲେ । ତେଣୁ, ସ୍କୁଲ୍ ପାଠ ଛାଡ଼ି ସେ ମଜି ଯାଉଥିଲେ କବିତା ଲେଖାଲେଖିରେ । ସ୍କୁଲ୍‌ଖାତାର ପଛପୃଷ୍ଠାରେ ଲୁଚେଇ ଲୁଚେଇ କବିତା ଲେଖୁଥିଲେ । କେତେଦିନ ଅବା ଚୋରାଲୁଚାରେ କବିତା ଲେଖା ଚାଲିବ ?

ଦିନେ କିନ୍ତୁ ସେ ଧରାପଡ଼ିଗଲେ । ବେଡ୍‌ଫୋର୍ଡ୍ ନାମକ ଜଣେ ଶିକ୍ଷକ କବିତା ଲେଖୁଥିବା ବେଳେ ଧରି ପକେଇଲେ ଡ଼ାଭିଙ୍କୁ । ରାଗରେ ଲାଲ୍ ପଡ଼ିଯାଇ ସେ ତୁରନ୍ତ ଡ଼କେଇ ପଠେଇଲେ ଡ଼ାଭିଙ୍କ ବାପାଙ୍କୁ ।

ବେଡ୍‌ଫୋର୍ଡଙ୍କ ଡ଼କରା ପାଇ ସ୍କୁଲ୍‌ରେ ଆସି ପହଞ୍ଚିଲେ ଡ଼ାଭିଙ୍କ ବାପା । ଡ଼ାଭିଙ୍କ ବିଷୟରେ ପଦଟିଏ ଭଲକଥା ସେ ଶୁଣିଲେନି ଶିକ୍ଷକଙ୍କଠାରୁ । କେବଳ ନିନ୍ଦା ଆଉ ନିନ୍ଦା । ସ୍କୁଲ୍ ଖାତାର ପଛପୃଷ୍ଠାରେ ଡ଼ାଭି କବିତା ଲେଖିଥିବା ମଧ୍ୟ ତାଙ୍କୁ ଦେଖେଇଦେଲେ ଶିକ୍ଷକ ଜଣକ ।

ଡ଼ାଭିଙ୍କ ପିତା ସବୁ ବିଷୟ ଶୁଣି ନିରବରେ ଘରକୁ ଫେରିଗଲେ । କେତେବେଳେ ନିଜ ପିଠି ଉପରେ ବାପାଙ୍କ ମାଡ଼ ବସିବ, ସେହି ଡ଼ରରେ କାକୁସ୍ଥ ହୋଇ ରହିଥାନ୍ତି ଡ଼ାଭି । ସକାଳ ବେଳାଟା ସେମିତି ସେମିତି ଗଲା । ବାପା ତାଙ୍କୁ ଡ଼କେଇ ପଠେଇଲେନି କି ଗାଳିମନ୍ଦ ଦେଲେନି ।

ସଂଜବେଳକୁ ବାପା ଡ଼ାଭିଙ୍କୁ ଡ଼କେଇ ପଠେଇଲେ । ତାଙ୍କୁ କୋଳେଇ ନେଇ ତାଙ୍କ ହାତରେ ଧରେଇ ଦେଲେ ଖାତାଟିଏ । ତାଙ୍କୁ କହିଲେ, ନେ, ନେ ତୋର କବିତା ଲେଖା ଖାତା । ତୋର ଯେତେ ଖୁସି ସେତେ କବିତା ଏଥିରେ ଲେଖିଚାଲ୍ । କିନ୍ତୁ, ସ୍କୁଲର ପଢ଼ାଖାତାରେ ଏଣିକି କବିତା ଲେଖାଲେଖି କରନା ।

ବାପାଙ୍କ କଥାମାନି ସେହିଦିନଠାରୁ ସ୍କୁଲଖାତାରେ ସିନା କବିତା ଲେଖିବା ଛାଡ଼ିଦେଲେ ଡ଼ାଭି, କିନ୍ତୁ କବିତା ଲେଖା ଛାଡ଼ିଲେନି । କବିତା ଲେଖାଲେଖି କରିବା ଫଳରେ ବିଶିଷ୍ଟ କବି ୱର୍ଡସ୍‌ୱାର୍ଥ ଏବଂ କୋଲେରିଜ୍‌ଙ୍କ ସାଂଗରେ ତାଙ୍କର ଘନିଷ୍ଠ ବନ୍ଧୁତା ହୋଇଗଲା । ଡ଼ାଭିଙ୍କ ବିଷୟରେ କୋଲେରିଜ୍ କହିଥିଲେ, ‘‘ବିଜ୍ଞାନରେ ନାଁ କମେଇ ନ ଥିଲେ ଜଣେ କବି ଭାବରେ ଖୁବ୍ ନାଁ କରିଥାନ୍ତେ ଡ଼ାଭି ।’’ ଡ଼ାଭିଙ୍କର ଜଣେ ବନ୍ଧୁ ମତ ଦେଇଥିଲେ, ‘‘ନାଇଟ୍ରସ୍ ଅକ୍‌ସାଇଡ୍ ଗ୍ୟାସ୍ ଶୁଙ୍ଘିଲେ ତାଙ୍କ ଦ୍ୱାରା

ଲେଖାଯାଉଥିବା କବିତା ଗୁଡ଼ିକ ଆହୁରି ଉଚ୍ଚକୋଟୀର ହେବବୋଲି ଭାରି ଆଶା କରିଥିଲେ ସେ । ସେଇଥିପାଇଁ ତ ନିଜେ ନିଜେ ଶୁଙ୍ଘି ଚାଲିଥିଲେ ତାକୁ । କିନ୍ତୁ, ଏପରି କରିବାଦ୍ୱାରା କବିତାଗୁଡ଼ିକ ଆଉ ପଢ଼ିବା ଯୋଗ୍ୟ ହୋଇ ରହିଲାନି ।

ପ୍ରସିଦ୍ଧ ପଦାର୍ଥ ବିଜ୍ଞାନୀ ମାଇକେଲ୍ ଫାରାଡ଼େ ସାର୍ ହମ୍‌ଫ୍ରେ ଡ଼ାଭିଙ୍କ ଗବେଷଣାଗାରରେ ପ୍ରଥମେ ଜଣେ ଦରୱାନ ଭାବେ ଚାକିରୀ ପାଇଥିଲେ ।

'ଆପଣଙ୍କର ସର୍ବଶ୍ରେଷ୍ଠ ଆବିଷ୍କାର କଅଣ' ବୋଲି ପ୍ରଶ୍ନ କରାଯାଇଥିଲା ଡ଼ାଭିଙ୍କୁ । ଡ଼ାଭି ସାଂଗେ ସାଂଗେ ଉତ୍ତର ଦେଇଥିଲେ, ''ଫାରାଡ଼େ ହିଁ ହେଉଛନ୍ତି ମୋର ସର୍ବଶ୍ରେଷ୍ଠ ଆବିଷ୍କାର ।'



# ଜୀବ-ପ୍ରେମୀ କିପ୍‌ଲିଙ୍ଗ୍

ମୋଟାସୋଟା ଯୁବକ ଜଣକ ଲୋକମାନଙ୍କ ଭିଡ଼ ଠେଲି ଆଗେଇ ଗଲେ । ସାମନାରେ ତାଙ୍କର ଏକ ବିରାଟ ହାତୀ । ହାତୀଟି ବନ୍ଧା ହୋଇଥାଏ ଲୁହା ଜଞ୍ଜିରରେ । ଜଞ୍ଜିରଟି ପୁଣି ଗୋଟିଏ ବଡ଼ ଲୁହା ଖୁଣ୍ଟରେ ବନ୍ଧା । ହାତୀଟି ମଝିରେ ମଝିରେ ଜୋର୍‌ରେ ଗର୍ଜନ ଛାଡୁଥାଏ । ଶୁଣ୍ଢକୁ ଉପର, ତଳ, ଡ଼ାହାଣ, ବାମ କରି ହଲାଉଥାଏ । ରହି ରହି ପାଦ କଚାଡୁ ଥାଏ ଭୂଇଁ ଉପରେ ।

ହାତୀପାଖରୁ ଅଳ୍ପ ଟିକିଏ ଦୂରରେ ଠିଆ ହୋଇଗଲେ ସେ । ହିନ୍ଦୀରେ, ବଡ଼ ପାଟିରେ ଏବଂ ଖୁବ୍ ସ୍ପଷ୍ଟ ଭାବରେ କଣ ସବୁ କହି ଚାଲିଲେ ହାତୀକୁ । କଅଣ ସବୁ ସେ କହୁଛନ୍ତି, ତାର ବିନ୍ଦୁବିସର୍ଗ ବୁଝିବାର ଶକ୍ତି ନ ଥିଲା ସେଠାରେ ଜମା ହୋଇଥିବା ଲୋକଙ୍କର । କାରଣ, ସେ କହୁଥିଲେ ହିନ୍ଦୀ ଭାଷାରେ, ହେଲେ ଲୋକମାନେ ସମସ୍ତେ ଥିଲେ ଇଂରେଜ । କାରଣ ଏହି ଘଟଣାଟି ଘଟିଥିଲା ବିଲାତରେ । କିନ୍ତୁ ତାଙ୍କ ପାଟିଶୁଣି ହାତୀଟି କାନ ଡ଼େରି ଶୁଣିବାକୁ ଲାଗିଲା । ତାର ଆଚରଣ ଶାନ୍ତ ପଡ଼ି ଆସୁଥିଲା ।

ଯୁବକ ଜଣକ ସେଠାରେ ଠିଆ ହୋଇ କଅଁଳେଇ କହି ଚାଲିଥାନ୍ତି । ଏତିକିବେଳେ ତାଙ୍କ ନିକଟରେ ଆସି ପହଞ୍ଚିଲେ ସର୍କସର ମ୍ୟାନେଜର । ସର୍କସର ମ୍ୟାନେଜର ସେହି ହାତୀକୁ କିଣିଥାନ୍ତି ସର୍କସ୍‌ରେ ଖେଳ ଦେଖେଇବା ପାଇଁ ।

ଯୁବକ ମ୍ୟାନେଜରଙ୍କୁ ପଚାରିଲେ, "ତାହାହେଲେ ହାତୀଟିକୁ ମାରିଦେବା ପାଇଁ ଆପଣ ସ୍ଥିର କରି ସାରିଛନ୍ତି ?"

ହାତୀଟିକୁ ଶାନ୍ତ କରାଇବାର ଦାୟିତ୍ୱ ସେ ନେବେ ବୋଲି ଯୁବକ ମ୍ୟାନେଜରଙ୍କୁ ଜଣେଇଲେ । କିନ୍ତୁ, ମ୍ୟାନେଜର ଏଥିରେ ଆଦୌ ରାଜି ହେଲେ ନାହିଁ । ସେହି ଯୁବକ ଜଣକ କିଏ, ତାହା ସେ ଜାଣନ୍ତି ନାହିଁ । ସେହି ଅଜଣା ବ୍ୟକ୍ତିକୁ ହାତୀଟି ଶୁଣ୍ଢରେ ଟେକିନେଇ, ପାଦରେ ଦଳି ଚକଟି ମାରିଦେଲେ, ମ୍ୟାନେଜର୍‌ଙ୍କୁ ହିଁ ଜେଲ୍ ଯିବାକୁ ପଡ଼ିବ ।

ମ୍ୟାନେଜରଙ୍କ ଭାବନାକୁ ଠିକ୍ ଠଉରେଇ ନେଲେ ସେହି ଅଜଣା ବ୍ୟକ୍ତି ଜଣକ । ସେ ତାଙ୍କ କୋଟ୍ ପକେଟ୍‌ରୁ ବାହାର କଲେ ଖଣ୍ଡେ ସାଦା କାଗଜ । କାଗଜ ଖଣ୍ଡକ ଉପରେ ଲେଖିଦେଲେ, "ହାତୀକୁ ଶାନ୍ତ କରାଇବା ପାଇଁ ମୁଁ ନିଜେ ନିଷ୍ପତ୍ତି ନେଇଛି ।

ଏଥିପାଇଁ ମ୍ୟାନେଜର୍ ମୋତେ ବାଧ କରିନାହାନ୍ତି କି ଅନୁରୋଧ କରିନାହାନ୍ତି । ମୋର କୌଣସି କ୍ଷତି ହେଲେ, ସେଥିପାଇଁ ମ୍ୟାନେଜରଙ୍କୁ ଦାୟୀ କରାଯାଇପାରିବ ନାହିଁ ।''

ଏତକ ଲେଖିସାରି ତଳେ ଦସ୍ତଖତ କରିଦେଲେ ଏବଂ କାଗଜ ଖଣ୍ଡକ ବଢ଼େଇଦେଲେ ମ୍ୟାନେଜରଙ୍କ ହାତକୁ । ଦସ୍ତଖତ ତଳେ 'ରୁଡ୍‌ୟାର୍ଡ କିପ୍‌ଲିଙ୍ଗ' ବୋଲି ନିଜର ପୂରା ନାଁଟି ମଧ ଲେଖାଥିଲା ।

ମ୍ୟାନେଜର ଉତ୍କଣ୍ଠିତ ହୋଇ ଚାହିଁ ରହିଥାନ୍ତି । କିପ୍‌ଲିଙ୍ଗ ହାତୀର ଆହୁରି ନିକଟକୁ ଚାଲିଗଲେ । ଲୋକେ ଭାବିନେଲେ ଯେ ହାତୀ ଏବେ ତା ଶୁଣ୍ଢରେ ତାଙ୍କୁ ଟେକି ନେଇ କଚାଡ଼ି ଦେବ ଏବଂ ପାଦରେ ଦଳି ଦେବ । କିନ୍ତୁ ହାତୀ ଏଭଳି କିଛି କଲା ନାହିଁ । କିପ୍‌ଲିଙ୍ଗ ହିନ୍ଦୀରେ ତାକୁ ଯାହା ଯାହା କହୁଥିଲେ, ସେ କଥାକୁ କାନେଇ ରହିଲା ।

ସେ ଥିଲା ଭାରତର ହାତୀ । ଭାରତରେ ବି ତାଲିମ୍ ନେଇଥିଲା । ତେଣୁ, ହିନ୍ଦୀ ଭାଷା ସାଂଗରେ ପରିଚିତ ଥିଲା ସେ । ହିନ୍ଦୀ ଭାଷା ତା କାନରେ ପଡ଼ିବାରୁ ସେ ଶାନ୍ତ ହୋଇ ଆସିଲା । କିପ୍‌ଲିଙ୍ଗ ତା ଶୁଣ୍ଢକୁ ସ୍ନେହରେ ଆଉଁସି ଚାଲିଲେ । ତାକୁ ଗେଲ କରି ଥାପୁଡ଼େଇଲେ । ହାତୀ ଏଥିରେ ଖୁବ୍ ଖୁସି ହୋଇଗଲା । ଶୁଣ୍ଢକୁ କିପ୍‌ଲିଙ୍ଗ କାନ୍ଧ ଉପରେ ଥୋଇଲା ।

ହାତୀଟି ଶାନ୍ତ ହୋଇଯିବାରୁ ମ୍ୟାନେଜର୍‌ଙ୍କ ଆନନ୍ଦର ସୀମା ରହିଲାନି ।

ପଶୁମାନଙ୍କୁ କିପ୍‌ଲିଙ୍ଗ କେତେ ଭଲ ପାଉଥିଲେ, ଏହି ଘଟଣାଟି ଥିଲା ତାର ପ୍ରମାଣ ।

ରୁଡ୍‌ୟାର୍ଡ କିପ୍‌ଲିଙ୍ଗ ଥିଲେ ନାମଜାଦା ଇଂରେଜ କବି ଏବଂ ଲେଖକ । ୧୮୬୫ ମସିହାରେ ଭାରତର ବମ୍ବେ (ଏବେକାର ମୁମ୍ବାଇ)ଠାରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାପା ଇଂଲଣ୍ଡରୁ ଆସି ଭାରତରେ ଚାକିରୀ କରୁଥିଲେ । ତେବେ, କିପ୍‌ଲିଙ୍ଗ ଶିକ୍ଷାଲାଭ କରିଥିଲେ ଇଂଲଣ୍ଡରେ । ଜଣେ ସାମ୍ବାଦିକ ଭାବରେ ସେ ଭାରତକୁ ଆସି ଏଠାକାର ବଣଜଙ୍ଗଲ ସହ ପରିଚିତ ହୋଇଥିଲେ । ବଣଜଙ୍ଗଲର ପଶୁପକ୍ଷୀଙ୍କୁ ନେଇ 'ଦି ଜଙ୍ଗଲ ବୁକ୍' ଏବଂ 'ଦି ସେକେଣ୍ଡ ଜଙ୍ଗଲ ବୁକ୍' ନାମକ ଦୁଇଟି ବହି ଲେଖିଥିଲେ କିପ୍‌ଲିଙ୍ଗ । ବହି ଦୁଇଟି ସେ ଲେଖିଥିଲେ ପିଲାମାନଙ୍କ ପାଇଁ । ଏହି ଗପ ବହି ଦୁଇଟି ଖୁବ୍ ଲୋକପ୍ରିୟ ହୋଇପାରିଥିଲା । ଏହା ବ୍ୟତୀତ ସେ ଆହୁରି ଅନେକ ପୁସ୍ତକ ରଚନା କରିଥିଲେ । ତାଙ୍କର କବିତା ଗୁଡ଼ିକ ମଧ ବେଶ୍ ଆଦର ଲାଭ କରିଥିଲା । ତାଙ୍କ ଦ୍ୱାରା ଲିଖିତ ଛଅଟି ବହି ପ୍ରକାଶିତ ହୋଇଥିଲା ଭାରତରେ । ଆଲ୍ଲାହାବାଦର ହୁଇଲର ରେଲ୍‌ୱେ ଲାଇବ୍ରେରୀ ସେଗୁଡ଼ିକୁ ପ୍ରକାଶ କରିଥିଲେ ।

୧୯୦୭ ମସିହାରେ ରୁଡ୍‌ୟାର୍ଡ୍ କିପ୍‌ଲିଙ୍ଗଙ୍କୁ 'ସାହିତ୍ୟ'ରେ ନୋବେଲ୍ ପୁରସ୍କାର ମିଳିଥିଲା ।



# ଗୋରାମୁହାଁ କଳାଲୋକ

୧୯୦୩ ମସିହା ଅଗଷ୍ଟ ୭ ତାରିଖରେ ଜନ୍ମଗ୍ରହଣ କରିଥିଲେ ଲୁଇ ଏସ୍.ବି. ଲିକି । ସେ ଥିଲେ ଜଣେ ଇଂରେଜ ପ୍ରତ୍ନତତ୍ତ୍ୱବିତ୍ ଏବଂ ନୃତତ୍ତ୍ୱବିତ୍ । ବଡ଼ କୌତୂହଳର କଥା ଯେ ଲିକି ପରିବାରର ପ୍ରାୟ ସମସ୍ତ ସଦସ୍ୟ ପ୍ରତ୍ନତତ୍ତ୍ୱ ଏବଂ ନୃତତ୍ତ୍ୱ ବିଜ୍ଞାନରେ ବ୍ୟୁପତ୍ତି ଅର୍ଜନ କରିଥିଲେ । ଲୁଇ, ତାଙ୍କର ପତ୍ନୀ ମେରୀ, ପୁତ୍ର ରିଚାର୍ଡ, ଫିଲିପ୍ ଏବଂ ଜନାଥନ୍ ତଥା ଜ୍ୟେଷ୍ଠ ପୁତ୍ରବଧୂ ମିଭ୍ - ପ୍ରତ୍ୟେକଙ୍କର ଏ କ୍ଷେତ୍ରରେ ରହିଛି ସ୍ୱ-ଅବଦାନ । ମଣିଷର ସୃଷ୍ଟିକାଳ ସମ୍ବନ୍ଧରେ ଆଗରୁ ଯେଉଁ କଳ୍ପନା କରାଯାଉଥିଲା, ଲୁଇ ଏବଂ ମେରୀ ତାହା ଭୁଲ୍ ବୋଲି ପ୍ରମାଣ କରିଦେଲେ । ପୂର୍ବ ଆଫ୍ରିକାରୁ ସେମାନଙ୍କ ଦ୍ୱାରା ଆବିଷ୍କୃତ ଜୀବାଶ୍ମକୁ ଅନୁଧାନ କରି ସେମାନେ ସାବ୍ୟସ୍ତ କରିଦେଲେ ଯେ ମଣିଷ ସୃଷ୍ଟିର ଇତିହାସ ଆହୁରି ପୁରୁଣା । ସେମାନେ ଆବିଷ୍କାର କରିଥିଲେ ଆଧୁନିକ ମାନବର ପୂର୍ବପୁରୁଷ 'ହୋମୋ ହାବିଲିସ୍'ର ପ୍ରଥମ ଜୀବାଶ୍ମ । ସେମାନଙ୍କ ଜ୍ୟେଷ୍ଠପୁତ୍ର ରିଚାର୍ଡ ଲିକି ପ୍ରାୟ ୨୦ ଲକ୍ଷ ବର୍ଷ ତଳର ମଣିଷ ଖପୁରୀଟିଏ ଆବିଷ୍କାର କରିବାର ଗୌରବ ଅର୍ଜନ କରିଥିଲେ । ପ୍ରଥମ ଜୀବାଶ୍ମ ଆବିଷ୍କାର କରିବା ବେଳକୁ ରିଚାର୍ଡଙ୍କୁ ହୋଇଥିଲା ଛଅବର୍ଷ ବୟସ ।

ନିଜର ଆତ୍ମଜୀବନୀରେ ରିଚାର୍ଡ ଲେଖିଥିଲେ, "ଲିକି ପରିବାର ସର୍ବଦା ଆହ୍ୱାନ ଆସ୍ୱାଦନ କରି ଆସିଛନ୍ତି ।"

ସେହି ପରିବାରଟି ଏକ କିମ୍ବଦନ୍ତୀର ସ୍ୱୀକୃତି ଲାଭ କରିବାର ପଶ୍ଚାତ୍‌ରେ ଆହ୍ୱାନ ଆସ୍ୱାଦନ କରିବାର ଅବଦାନ ନିହିତ ।

୧୯୮୪ ମସିହା ଅକ୍ଟୋବର୍ ମାସରେ ପ୍ରଖ୍ୟାତ ସମ୍ବାଦପତ୍ର 'ନିୟୁୟର୍କ ଟାଇମସ୍' ପ୍ରକାଶ କରିଥିଲା ଦୁଇପୃଷ୍ଠା ସମ୍ବଳିତ ଏକ ପ୍ରବନ୍ଧ । ପ୍ରବନ୍ଧଟିର ଶୀର୍ଷକ ଥିଲା, 'ଲିକି ପରିବାର - ଏକ ଉତ୍ତୁଙ୍ଗ ପ୍ରଖ୍ୟାତି (The Leakeys, A Towering Reputation) । ସେମାନଙ୍କ ବିଷୟରେ ପତ୍ରିକାଟିର ମନ୍ତବ୍ୟ ଥିଲା- ଅତ୍ୟନ୍ତ କଠୋର ପ୍ରତିଦ୍ୱନ୍ଦୀ ମଧ୍ୟ ଲିକି ପରିବାରର ଅବଦାନକୁ ସ୍ୱୀକାର କରିବାକୁ ବାଧ ହୋଇଥାଏ । 'ସାଇନ୍‌ସ ଡ଼ାଇଜେଷ୍ଟ ପତ୍ରିକାର ମତରେ ଲିକିମାନେ ହେଉଛନ୍ତି ଜୀବାଶ୍ମ ନୃତତ୍ତ୍ୱ ଶାଖାର ପ୍ରଥମ ପରିବାର ।'

ଲୁଇ ଲିକିଙ୍କୁ ସାଧାରଣତଃ 'ଇଂରେଜ' ନୃତତ୍ତ୍ୱବିଜ୍ଞାନୀ ଭାବରେ ପରିଚିତ କରାଯାଇଥାଏ । କିନ୍ତୁ, ସେ ନିଜକୁ ଜଣେ ଆଫ୍ରିକୀୟ ଭାବରେ ପରିଚୟ ଦେବାରେ ଗର୍ବ ଅନୁଭବ କରିଥାନ୍ତି ।

ଲୁଇ ଲିକି ଜନ୍ମ ହୋଇଥିଲେ କେନିଆରେ । ତାଙ୍କର ପିତା ହ୍ୟାରୀ ଏବଂ ମାତା ମେରୀ ବ୍ୟାଜେଟ୍ ମିସ୍‌ନାରୀ କାର୍ଯ୍ୟ କରିବା ନିମନ୍ତେ ଇଂଲଣ୍ଡରୁ ଯାଇ କେନିଆରେ ବାସ କରୁଥିଲେ । ଲୁଇ ଜନ୍ମ ହେବାବେଳକୁ ସେମାନେ ରହୁଥିଲେ ଏକ ଝାଟିମାଟି ଘରେ । ଘରଟିର ଚଟାଣ ଥିଲା କଚ୍ଚା ।

ତାଙ୍କର ଜନ୍ମହେବା ଖବର ପାଇ ତାଙ୍କୁ ଦେଖିବା ନିମନ୍ତେ ଦୀର୍ଘପଥ ଚାଲିଚାଲି ଆସି ପହଞ୍ଚିଥିଲେ ସ୍ଥାନୀୟ କିକ୍ୟୁୟୁ ସଂପ୍ରଦାୟର ସଦସ୍ୟମାନେ । ସେମାନଙ୍କ ମଧ୍ୟରୁ ଅଧିକାଂଶ କୌଣସି ଶ୍ୱେତାଙ୍ଗ ଶିଶୁକୁ ଦେଖି ନ ଥିଲେ । ଅତ୍ୟନ୍ତ ସ୍ନେହପରବଶ ହୋଇ ସେମାନେ ନିଜ ନିଜର ଆସ୍ଥା ପ୍ରକଟ କରିଥିଲେ ତାଙ୍କ ଉପରେ । ତାଙ୍କୁ ଗୁଣି ଗାରେଡ଼ିର ପ୍ରଭାବରୁ ମୁକ୍ତ ରଖିବା ଉଦ୍ଦେଶ୍ୟରେ ସ୍ଥାନୀୟ ପ୍ରଥା ଅନୁଯାୟୀ ତାଙ୍କ ଉପରେ ଛିଞ୍ଚି ପକେଇଥିଲେ ନିଜ ନିଜର ଛେପ । ସେମାନଙ୍କର ବିଶ୍ୱାସ ଥିଲା ଯେ ଛେପ ଡ଼ରରେ ଡ଼ାଆଣୀମାନେ ଶିଶୁଟିର ପାଖ ପଶିବେ ନାହିଁ । କିନ୍ତୁ, ଲୁଇଙ୍କ ମାଆ ମେରୀ ଶିଶୁପୁତ୍ରଟିର ରୋଗ ସଂକ୍ରମଣ ଆଶଙ୍କା କରି ଶିହରି ଉଠିଥିଲେ ଓ ସେମାନେ ବାହୁଡ଼ିଗଲା ପରେ ଲୁଇଙ୍କୁ ଭଲଭାବରେ ଗାଧୋଇ ଦେଉଥିଲେ ।

ଲୁଇଙ୍କ ପିତାମାତା ଆଫ୍ରିକାର ଅଧିବାସୀମାନଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇବାରେ ବ୍ରତୀ ଥିଲେ । କିନ୍ତୁ ଲୁଇ ହୋଇଗଲେ ପୂରାପୂରି ଆଫ୍ରିକୀୟ । ଅତି ଅନ୍ତରଙ୍ଗ ଭାବରେ ନିଜର କରିନେଲେ କିକ୍ୟୁୟୁ ସଂପ୍ରଦାୟର ସଦସ୍ୟମାନଙ୍କୁ । ଅନର୍ଗଳ ଭାବରେ କହୁଥିଲେ କୁକ୍ୟୁୟୁ ଭାଷା । ବୟସ୍କମାନଙ୍କଠାରୁ ଶୁଣୁଥିଲେ ସେମାନଙ୍କର ଲୋକକଥା ଏବଂ କିମ୍ବଦନ୍ତୀ । ମାତ୍ର ୧୩ ବର୍ଷ ବୟସରେ କିକ୍ୟୁୟୁ ସଂପ୍ରଦାୟର ଜଣେ ସଦସ୍ୟରୂପେ ତାଙ୍କୁ ଗ୍ରହଣ କରିନିଆଗଲା । ସେମାନଙ୍କ ମୁଖ୍ୟ କୋଏନାଙ୍ଗେ ଲୁଇଙ୍କ ନାଁ ଦେଇଥିଲେ, 'ଗୋରାମୁହାଁ କଳାଲୋକ' ।

କିକ୍ୟୁୟୁ ସଂପ୍ରଦାୟସହ ଏକୀଭୂତ ହେବା ଫଳରେ ତାଙ୍କର ଭବିଷ୍ୟତ ବୃତ୍ତିଗତ ଜୀବନ ବହୁଳ ଭାବରେ ପ୍ରଭାବିତ ହୋଇଥିଲା । କିକ୍ୟୁୟୁମାନଙ୍କ ନୃତତ୍ତ୍ୱ ଏବଂ ପ୍ରଥା ସଂପର୍କରେ ଲୁଇ ପ୍ରଣୟନ କରିଥିଲେ ତିନୋଟି ଗ୍ରନ୍ଥ । ସେମାନଙ୍କ ଭାଷାର ବ୍ୟାକରଣ ପୁସ୍ତକ ରଚନା କରିଥିଲେ । 'ମାଉ ମାଉ' ବିଦ୍ରୋହ ସହ ସାମିଲ ହୋଇ ଇଂରେଜମାନଙ୍କ

କବଳରୁ କେନିଆକୁ ସ୍ୱାଧୀନ କରାଇବାରେ ଗ୍ରହଣ କରିଥିଲେ ପ୍ରମୁଖ ଭୂମିକା । କିକ୍ୟୁୟୁ ବନ୍ଧୁମାନଙ୍କ ମତରେ ଲୁଇ ଇଂରାଜୀ ପରିବର୍ତ୍ତେ କିକ୍ୟୁୟୁ ଭାଷାରେ ହିଁ ଚିନ୍ତା କରିଥାନ୍ତି । କିନ୍ତୁ, ଲୁଇ ଲେଖିଛନ୍ତି ଯେ ସେ କିକ୍ୟୁୟୁ ଭାଷାରେ ସ୍ୱପ୍ନ ମଧ ଦେଖନ୍ତି । ତାଙ୍କ ଆଦ୍ୟ ଆତ୍ମଜୀବନୀର ସେ ନାମକରଣ କରିଛନ୍ତି 'ଶ୍ୱେତ ଆଫ୍ରିକୀୟ' (White African) । ଏପରିକି କେନିଆର ଜାତୀୟ ଭାଷା 'ସ୍ୱାହିଲି'ରେ ମଧ ତାଙ୍କର ବେଶ୍ ଦଖଲ ଥିଲା ।

ସେତେବେଳେ ବିଶ୍ୱାସ କରାଯାଉଥିଲା ଯେ ପରବର୍ତ୍ତୀ ପ୍ରସ୍ତର ଯୁଗ ବିକାଶ ଲାଭ କରିଥିଲା ଇଉରୋପରେ । କାରଣ, ଇଉରୋପରୁ ଆବିଷ୍କୃତ ହୋଇଥିଲା ପ୍ରସ୍ତର ଯୁଗର ଉପକରଣମାନ । ପ୍ରସ୍ତରଯୁଗ ବା 'ଷ୍ଟୋନ ଏଜ୍'କୁ ମଧ କୁହାଯାଏ 'ଫ୍ଲିଣ୍ଟ ଏଜ୍' । 'ଫ୍ଲିଣ୍ଟ' ଘଷିଲେ ସେଥିରୁ ଅଗ୍ନିର ସ୍ଫୁଲିଙ୍ଗ ବାହାରିଥାଏ । ଲୁଇ ଆଫ୍ରିକାରେ ଫ୍ଲିଣ୍ଟ ପଥର ନିର୍ମିତ ଉପକରଣ ଖୋଜିବାରେ ଲାଗିଲେ । ସେଠାରେ ଏପରି ଜାତିର ପଥର ମିଳେନି ବୋଲି ତାଙ୍କର ଧାରଣା ନ ଥିଲା । ତଥାପି, ଉପକରଣ ଅନୁସନ୍ଧାନରେ ଲାଗିପଡ଼ିଲେ ସେ ।

ତାଙ୍କର ଅନୁସନ୍ଧାନ ବିଫଳ ଗଲାନାହିଁ । ସେ ପ୍ରସ୍ତର ନିର୍ମିତ ଅନେକ ଉପକରଣ ଆବିଷ୍କାର କଲେ । ସେଗୁଡ଼ିକ ନିର୍ମିତ ହୋଇଥିଲା 'ଓବ୍‌ସିଡ଼ିଆନ୍' ନାମକ ଆଗ୍ନେୟଶିଳାରେ । ସେଗୁଡ଼ିକ ପ୍ରାଚୀନ ଅଧିବାସୀଙ୍କ ଦ୍ୱାରା ତିଆରି ବୋଲି ଲୁଇ ଦାବି କରିଥିଲେ ମଧ ତାଙ୍କର କିକ୍ୟୁୟୁ ବନ୍ଧୁମାନେ ତାଙ୍କ ସହ ଏକମତ ହେଲେ ନାହିଁ ।

ସେମାନେ ତାଙ୍କ କଥାକୁ ହସରେ ଉଡ଼େଇ ଦେଇ କହିଲେ ଯେ ସେଗୁଡ଼ିକ ହେଉଛି ଆକାଶରେ ରହୁଥିବା ପ୍ରେତମାନଙ୍କର ଖୁର । କିନ୍ତୁ ଲୁଇଙ୍କ ଦ୍ୱାରା ସଂଗୃହୀତ ଉପକରଣଗୁଡ଼ିକ ପ୍ରସ୍ତରଯୁଗର ଉପକରଣ ବୋଲି ମତ ଦେଲେ ନାଇରୋବି ସଂଗ୍ରହାଳୟର ବିଶେଷଜ୍ଞ ଆର୍‌ଥର୍ ଲୋଭେରିଜ୍ । ପୂର୍ବ ଆଫ୍ରିକାରେ ପ୍ରସ୍ତରଯୁଗ ସମ୍ବନ୍ଧରେ ଅନୁଧାନ ଆରମ୍ଭ କରିବା ବେଳକୁ ଲୁଇଙ୍କର ବୟସ ମାତ୍ର ୧୩ ବର୍ଷ ।

ଲୁଇ ରହୁଥିବା କ୍ଷୁଦ୍ର ସହର କାବେଟ୍‌ରେ ପଢ଼ିବାର ସୁଯୋଗ ନ ଥିଲା । ପିତାଙ୍କ ପାଖରେ ବସି ସେ କିଛି କିଛି ଗଣିତ, ଫରାସୀ ଏବଂ ଲାଟିନ୍ ଶିକ୍ଷା କରିଥିଲେ । ତା' ପରେ ୧୬ ବର୍ଷ ବୟସରେ ଚାଲିଗଲେ ଇଂଲଣ୍ଡ । କ୍ୟାମ୍ବ୍ରିଜ୍‌ରେ ନାଁ ଲେଖେଇ ପଢ଼ିଲେ ନୃତତ୍ତ୍ୱ । ନୃତତ୍ତ୍ୱ ବିଭାଗର ପ୍ରଫେସର ଥିଲେ ଡ଼କ୍ଟର ଏ.ସି. ହ୍ୟାଡ଼ନ୍ । ଶିକ୍ଷାଗ୍ରହଣ କରିବାରେ କୌଣସି ସୁଯୋଗକୁ ଲୁଇ ହାତଛଡ଼ା କରୁନଥିଲେ । କ୍ୟାମ୍ବ୍ରିଜ୍‌ରେ ଶିକ୍ଷାଲାଭ

କାଳରେ ସେ ପ୍ରସ୍ତୁତ କରିଥିଲେ ଏକ ଗବେଷଣା ସନ୍ଦର୍ଭ । ସନ୍ଦର୍ଭଟିର ବିଷୟବସ୍ତୁ ଥିଲା 'କେନିଆରେ ପ୍ରସ୍ତର ଯୁଗର ପ୍ରମାଣ' । ସନ୍ଦର୍ଭଟି ଖୁବ୍ ପ୍ରଶଂସିତ ହୋଇଥିଲା ଏବଂ ସର୍ବୋଚ୍ଚ ନମ୍ବର ରଖି ଲୁଇ ସ୍ନାତକ ଡ଼ିଗ୍ରୀ ହାସଲ କରିଥିଲେ ।

କ୍ୟାମ୍ବ୍ରିଜ୍‌ରେ ତାଙ୍କର କୃତିତ୍ୱ ଏବଂ ପୂର୍ବର କ୍ଷେତ୍ର ଅନୁଭୂତିକୁ ବିଚାରକୁ ନେଇ ତାଙ୍କ ଗବେଷଣା ଅନୁଦାନ ଏବଂ ଆର୍ଥିକ ସହାୟତା ମିଳିବାରେ ଅସୁବିଧା ହେଲାନାହିଁ । ତେଣୁ, ପ୍ରସ୍ତରଯୁଗ ସମ୍ବନ୍ଧରେ ଉଚ୍ଚତର ଗବେଷଣା କରିବା ନିମନ୍ତେ ସେ ଚାଲିଲେ ପୂର୍ବ ଆଫ୍ରିକା । ବିଶେଷ କରି ଟାଞ୍ଜାନିଆର ଓଲଡୁଭାଇ ସଂକୀର୍ଣ୍ଣ ଗିରିପଥ ଥିଲା ତାଙ୍କର ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟସ୍ଥଳ । ଗିରିପଥଟିର ଲମ୍ବ ପାଖାପାଖି ୪୦ କିଲୋମିଟର ଏବଂ ଗଭୀରତା ପ୍ରାୟ ୩୦୦ ଫୁଟ ।

ଲୁଇ ଲିକି ଓଲଡୁଭାଇ ଗିରିପଥକୁ ନିର୍ବାଚନ କରିବା 'ଲିକିଙ୍କ ସୌଭାଗ୍ୟ' ରୂପେ କଥିତ । କାରଣ, ସେତେବେଳେ ଅଧିକାଂଶ ବୈଜ୍ଞାନିକଙ୍କର ଧାରଣା ଥିଲା ଯେ ମାନବଜାତିର ସୃଷ୍ଟି ହୋଇଥିଲା ଏସିଆରେ । ଏପରିକି କ୍ୟାମ୍ବ୍ରିଜ୍‌ର ଜଣେ ପ୍ରଫେସର୍ ଲୁଇଙ୍କୁ ସତର୍କ କରେଇ ଦେଇ କହିଥିଲେ, ''ମିସିଙ୍ଗ୍ ଲିଙ୍କ୍' ବା 'ପିହିତ ଯୋଜକ' ଆଫ୍ରିକାରେ ଖୋଜି ସମୟ ବରବାଦ୍ କରନା । କାରଣ, ସେଠାରେ ଅନୁସନ୍ଧାନ କରିବା ବୃଥା । ଆଦିମାନବ ବିଷୟରେ ଅନୁଧ୍ୟାନ କରି ଜୀବନ ବିତେଇବାକୁ ଚାହୁଁଥିଲେ ଏସିଆକୁ ଯାତ୍ରାକର ।'' କିନ୍ତୁ, ଆତ୍ମବିଶ୍ୱାସୀ ତଥା ଦୃଢ଼ ନିଶ୍ଚିତ ଲୁଇ ଉତ୍ତର ଦେଇଥିଲେ, ''ନା, ମୁଁ ଜନ୍ମ ହୋଇଛି ପୂର୍ବ ଆଫ୍ରିକାରେ । ଆଦିମାନବର ରହଣି ବିଷୟରେ ସେଠାରେ ମୁଁ କେତେକ ପ୍ରମାଣ ପାଇଛି । ତାହାଛଡ଼ା, ମୁଁ ନିଃସନ୍ଦେହ ଯେ ମାନବଜାତିର ଏକ୍ରୁଡ଼ିଶାଳ ହେଉଛି ଆଫ୍ରିକା, ଏସିଆ ନୁହେଁ ।

ଆଫ୍ରିକା ତାଙ୍କୁ ନିରାଶ କରିନାହିଁ । ବରଂ, ତାଙ୍କ ପରିବାରକୁ ଆଣି ଦେଇଛି ଆନ୍ତର୍ଜାତିକ ସ୍ୱୀକୃତି ।

ଏକ ବକ୍ତୃତା କାର୍ଯ୍ୟକ୍ରମରେ କାଲିଫର୍ଣ୍ଣିଆ ଯିବା ନିମନ୍ତେ ନାଇରୋବି ଛାଡ଼ିଥିଲେ ଲୁଇ ଲିକି । କାଲିଫର୍ଣ୍ଣିଆ ଯିବା ବାଟରେ ଅଟକି ଯାଇଥିଲେ ଲଣ୍ଡନ୍‌ରେ । ସେଠାରେ, ୧୯୭୨ ମସିହା ଅକ୍ଟୋବର ୧ ତାରିଖରେ ହଠାତ୍ ହାର୍ଟ-ଆଟାକ୍ ହୋଇ ତାଙ୍କର ମୃତ୍ୟୁ ହୋଇଗଲା । କିନ୍ତୁ, ଲିକି ପରିବାରର ଜ୍ୟେଷ୍ଠ ଏବଂ ମାନବଜୀବାଶ୍ମ ଆବିଷ୍କାରର ମାର୍ଗଦର୍ଶକରୂପେ ତାଙ୍କର ପରିଚିତି ଅମ୍ଳାନ ।



# ବର୍ଜେଲିଅସ୍‌ଙ୍କ ବିଷୟରେ ମଜା କଥା

୧୮୪୮ ମସିହା ଅଗଷ୍ଟ ୭ ତାରିଖରେ ମୃତ୍ୟୁବରଣ କରିଥିଲେ ଜନ୍‌ସ୍‌ଜାକବ୍ ବର୍ଜେଲିୟସ୍ । ବର୍ଜେଲିଅସ୍ ଥିଲେ ସୁଇଡ଼େନ୍‌ର ଅଧିବାସୀ । ତାଙ୍କର ଜନ୍ମତିଥି ୧୭୭୯ ମସିହା ଅଗଷ୍ଟ ୨୦ ତାରିଖ । ଜଣେ ରସାୟନବିତ୍ ଭାବରେ ହିଁ ସେ ପରିଚିତ । କିନ୍ତୁ, ଡ଼ିଗ୍ରୀ ହାସଲ କରିଥିଲେ ଚିକିତ୍ସାବିଜ୍ଞାନରେ । ୧୮୦୨ ମସିହାରେ ଉପ୍‌ସାଲାରେ ଥିବା ମେଡ଼ିକାଲ୍ ସ୍କୁଲରୁ ସେ ଡ଼ାକ୍ତରୀ ଶିକ୍ଷା ସମାପ୍ତ କରିଥିଲେ । କିନ୍ତୁ ରସାୟନବିଜ୍ଞାନରେ ସେ ଏତେ ଦକ୍ଷଥିଲେ ଯେ ତାଙ୍କର ପରବର୍ତ୍ତୀ ଜୀବନକାଳ କେବଳ ସେହି କ୍ଷେତ୍ରରେ ହିଁ ବିନିଯୋଗ ହୋଇଗଲା ।

ପରମାଣୁ ଓଜନ ବା ଆଟମିକ୍ ୱେଟ୍ ଉପରେ ଅନୁଧ୍ୟାନ କଲାବେଳେ ମୌଳିକର ପୂରା ନାଁଟାକୁ ନେଇ ବଡ଼ ଅସୁବିଧାରେ ପଡୁଥିଲେ ସେ । ତେଣୁ, ସେଗୁଡ଼ିକୁ, ଏବଂ ରାସାୟନିକ ଯୌଗିକଗୁଡ଼ିକୁ ସଂକେତ ଆକାରରେ ପ୍ରକାଶ କରିବା ନିମନ୍ତେ ସେ ଉଦ୍ୟମ ଆରମ୍ଭ କଲେ । ସେ ପରାମର୍ଶ ଦେଲେ ଯେ ମୌଳିକ ବସ୍ତୁର ଲାଟିନ୍ ନାମର ପ୍ରଥମ ଅକ୍ଷର କିମ୍ବା ପ୍ରଥମ ଅକ୍ଷର ସହ ନାମଟି ମଧ୍ୟରୁ ଯେ କୌଣସି ଅନ୍ୟ ଏକ ଅକ୍ଷରକୁ ମିଶାଇ ସଙ୍କେତ ରୂପେ ଗ୍ରହଣ କରାଯାଇପାରେ । ଉଦାହରଣ ସ୍ୱରୂପ, ଅକ୍‌ସିଜେନ୍‌ର ସଙ୍କେତ 'O' ନାଇଟ୍ରୋଜେନ୍‌ର ସଙ୍କେତ 'N', କ୍ୟାଲ୍‌ସିୟମ୍‌ର 'Ca', କ୍ଲୋରିନ୍‌ର 'Cl'.. ଏହିପରି ଭାବରେ ବ୍ୟବହାର କରିହେବ । ରାସାୟନିକ ଯୌଗିକର ସଂକେତ ସମ୍ବନ୍ଧରେ ମଧ୍ୟ ସେ ଆଲୋକପାତ କରିଥିଲେ । ତାଙ୍କ ପ୍ରଦତ୍ତ ସୂତ୍ର ଅନୁସାରେ ଅମୋନିଆକୁ $NH_3$ ଏବଂ କ୍ୟାଲ୍‌ସିୟମ୍ କାର୍ବୋନେଟ୍‌କୁ $CaCo_3$ ଭାବରେ ଲେଖାଯାଉଛି ।

ବର୍ଜେଲିଅସ୍ ମଧ୍ୟ 'ବିଦ୍ୟୁତ୍' କ୍ଷେତ୍ରରେ ଗବେଷଣା କରିଥିଲେ । ଆବିଷ୍କାର କରିଥିଲେ ସେଲେନିୟମ, ସିଲିକନ୍ ଏବଂ ଥୋରିୟମ୍ । ରଚନା କରିଥିଲେ ରସାୟନ ବିଜ୍ଞାନର ପାଠ୍ୟପୁସ୍ତକ । ପ୍ରକାଶ କରିଥିଲେ ଏହି ଶାଖା ସଂପର୍କିତ ପତ୍ରିକା ।

କିନ୍ତୁ, ବୟସ ବଢ଼ିବା ସଂଗେ ସଂଗେ ବଢ଼ି ବଢ଼ି ଚାଲିଲା ତାଙ୍କର ରକ୍ଷଣଶୀଳତା । ରସାୟନବିଜ୍ଞାନ ସଂକ୍ରାନ୍ତ ଯେଉଁ ତଥ୍ୟ କିମ୍ବା ପରୀକ୍ଷାନିରୀକ୍ଷା ତାଙ୍କର ମନକୁ ପାଉ ନ ଥିଲା, ସେ ତାକୁ ତତ୍‌କ୍ଷଣାତ୍ ଅଗ୍ରାହ୍ୟ କରିଦେଉଥିଲେ ଓ ତାଙ୍କର ପ୍ରବଳ ଖ୍ୟାତିଯୋଗୁଁ

ଉକ୍ତ ତଥ୍ୟ ତଥା ପରୀକ୍ଷା ବେଶ୍‌କିଛି ପରାଭବ ପାଉଥିଲା । ସେଗୁଡ଼ିକର ସାରବତ୍ତା ସାବ୍ୟସ୍ତ କରିବା ସମ୍ଭବ ହୋଇଥିଲା ତାଙ୍କର ମୃତ୍ୟୁପରେ । କିନ୍ତୁ, ତାଙ୍କରି ପରାମର୍ଶରେ ହିଁ ଗୃହୀତ ହୋଇଥିଲା Catalysis, Isomer, Polymer, Allotrope, Halogen, Protein ଇତ୍ୟାଦି ଶବ୍ଦ ଓ ସେଗୁଡ଼ିକ ଅଦ୍ୟାବଧି ପ୍ରଚଳିତ ।

ବହୁବର୍ଷ ପର୍ଯ୍ୟନ୍ତ ସେ ବିବାହ କରି ନ ଥିଲେ । ବେଟି ପପିଅସ୍ ନାମ୍ନୀ ଜଣେ ସୁନ୍ଦରୀ ମହିଳାଙ୍କୁ ବିବାହ କଲାବେଳକୁ ବର୍ଜେଲିଅସ୍‌ଙ୍କୁ ହୋଇଥିଲା ୫୬ ବର୍ଷ । ତାଙ୍କ ସ୍ତ୍ରୀ ତାଙ୍କଠାରୁ ଥିଲେ ୩୨ ବର୍ଷସାନ । ସେତେବେଳେ ସେ ତାଙ୍କର ସହଗବେଷକ ତଥା ୟୁରିଆର ସଂଶ୍ଳେଷକ ଓହଲର୍‌ଙ୍କ ପାଖକୁ ଲେଖିଥିଲେ, "ବୁଝିଲ ଓହଲର୍, ଗତ ଛଅ ସପ୍ତାହ ଧରି ମୁଁ ଜଣେ ନବବିବାହିତର ଜୀବନ ଯାପନ କରୁଛି । ବୈବାହିକ ଜୀବନ ସଂପର୍କରେ ପୂର୍ବରୁ ମୋର ଆଦୌ କୌଣସି ଧାରଣା ନ ଥିଲା କିମ୍ବା ଯାହା କେବଳ ଥିଲା ଭ୍ରାନ୍ତ ଧାରଣା ।"

ବିବାହ ଦିବସରେ ସୁଇଡ଼େନ୍‌ର ରାଜା ଚତୁର୍ଦ୍ଦଶ ଚାର୍ଲସ୍ ତାଙ୍କୁ 'ବ୍ୟାରନ୍' ସମ୍ମାନରେ ଭୂଷିତ କରିଥିଲେ ଓ ରାଜାଙ୍କର ନିର୍ଦ୍ଦେଶାନୁସାରେ ଏହି ସୁସମ୍ମାନ ସମବେତ ଅତିଥିମାନଙ୍କ ଆଗରେ ପଢ଼ି ଶୁଣାଇ ଦିଆଯାଇଥିଲା ।

ବର୍ଜେଲିଅସ୍‌ଙ୍କ ମୃତ୍ୟୁର କିଛି ବର୍ଷ ପରେ ଏକ ସାନ୍ଧ୍ୟଭୋଜନ ଅବସରରେ ତାଙ୍କର ପତ୍ନୀଙ୍କୁ ଜଣେ ପ୍ରଶ୍ନ କରିଥିଲେ, "ମ୍ୟାଡ଼ାମ୍, ଆପଣଙ୍କ ପତିଦେବ କଅଣ ଥିଲେ ?" ତାଙ୍କର ପତ୍ନୀ ଉତ୍ତର ଦେଇଥିଲେ, "ଓ ମୋ" ପତିଙ୍କ କଥା ପଚାରୁଛ ? ସେ ତ ବର୍ଜେଲି ପାର୍କରେ ସ୍ଥାପିତ ଏକ ପ୍ରତିମୂର୍ତ୍ତି !"

ଏହା ସତ୍ତ୍ୱେ ସେମାନଙ୍କ ବୈବାହିକ ସଂପର୍କ ଥିଲା ଖୁବ୍ ନିବିଡ଼ ।

ବର୍ଜେଲିଅସ୍‌ଙ୍କ ଗବେଷଣାଗାରରେ ଗବେଷଣାରତ ଥିଲେ ସେଫସ୍ତ୍ରମ୍ ଏବଂ ଓହଲର୍ । ଉଭୟ 'ଭାନାଡ଼ିୟମ' ଆବିଷ୍କାର କରିବାରେ ଲାଗି ପଡ଼ିଥିଲେ । କିନ୍ତୁ, ୟୁରିଆ ସଂଶ୍ଳେଷଣ ଭଳି ଏକ ଯୁଗାନ୍ତକାରୀ ଉଦ୍ଭାବନ କରିବାରେ ଓହଲର୍ ସଫଳ ହୋଇଥିଲେ ମଧ୍ୟ 'ଭାନାଡ଼ିୟମ୍' ଆବିଷ୍କାର କରିବାରେ ବିଫଳ ହୋଇଥିଲେ । ସଫଳତା ମାରିନେଲେ ସେଫସ୍ତ୍ରମ୍ । ଓହଲରଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ବର୍ଜେଲିଅସ୍ ତାଙ୍କୁ ଲେଖିଥିଲେ ଏକ ପତ୍ର । ପତ୍ରଟି ଥିଲା ଏହିପରି -

"ପୁରା କାଳରେ ଦୂର ଉତ୍ତରାଞ୍ଚଳରେ ଥିଲେ ଦେବୀ ଭାନ୍ନାଡ଼ିସ୍ । ଭାନାଡ୍ଡିସ୍ ଥିଲେ ପରମାସୁନ୍ଦରୀ ଏବଂ ଅତ୍ୟନ୍ତ ବସଳା । ଦିନେ କେହି ଜଣେ ତାଙ୍କ ଦରଜାରେ

ମୃଦୁ କରାଘାତ କଲା । ଦେବୀ ନିଜ ଆସନରେ ଆରାମରେ ବସି ରହି ଭାବିଲେ, 'ଲୋକଟି ଆଉ ଥରେ କରାଘାତ କରୁତ' ! କିନ୍ତୁ, ଦେବୀ ଆଉ କିଛି ଶବ୍ଦ ଶୁଣି ପାରିଲେନି । ଦରଜା ଆଘାତ କରୁଥିବା ବ୍ୟକ୍ତି ଜଣକ ପାହାଚରେ ଓହ୍ଲେଇ ଫେରିଗଲେ । ହେଲେ, ସେ 'ବ୍ୟକ୍ତି ଜଣକ କିଏ ବୋଲି ଜାଣିବା ନିମନ୍ତେ ଉତ୍ସୁକ ହୋଇ ଉଠିଲେ ଭାନାଡ଼ିସ୍ । ସେ ଆସନ ଛାଡ଼ି ତୁରନ୍ତ ଧାଇଁ ଆସିଲେ ଝରକା ପାଖକୁ । ଓହଳର ହିଁ ପାହାଚ ଦେଇ ଓହ୍ଲେଇ ଯାଉଥିବାର ଝରକାବାଟେ ଦେଖିବାକୁ ପାଇଲେ ସେ ।

''ବିତିଗଲା ଆଉ କିଛି ଦିନ । ଦିନେ ପୁଣି ଭାନାଡ଼ିସ୍‌ଙ୍କ ଦରଜାରେ ଶୁଣାଗଲା କରାଘାତର ଶବ୍ଦ । ଆସନରେ ବସିରହି ଅପେକ୍ଷା କଲେ ଭାନାଡ଼ିସ୍ । କିନ୍ତୁ, ସେହି ଶବ୍ଦ ବନ୍ଦ ହେଲାନାହିଁ । ନିରବଚ୍ଛିନ୍ନ ଭାବରେ ଲାଗି ରହିଲା । ଭାନାଡ଼ିସ୍ ଆଉ ସମ୍ଭାଳି ପାରିଲେ ନାହିଁ । ସେ ନିଜେ ଆସି ଦରଜା ଉନ୍ମୁକ୍ତ କରିଦେଲେ । ଦରଜା ଦେଇ ଭିତରକୁ ପ୍ରବେଶ କଲେ ସେଫ୍ରେସଟ୍ରମ୍ । ସେମାନଙ୍କର ମିଳନରୁ ହିଁ ଜନ୍ମ ନେଲା ଭାନାଡ଼ିୟମ୍ ।''



# ସାଧୁତା ପାଇଁ ପୁରସ୍କାର

ତୁମ୍ଭେମାନେ ଚନ୍ଦ୍ରଶେଖର ଭେଙ୍କଟରାମନ୍‌ଙ୍କ ବିଷୟରେ ଜାଣିଥିବ । ସେ ସି.ଭି. ରମନ୍ ନାଆଁରେ ବେଶୀ ଜଣାଶୁଣା । ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇବାରେ ସେ ଥିଲେ ପ୍ରଥମ ଭାରତୀୟ । ୧୯୩୦ ମସିହାରେ, ପଦାର୍ଥ ବିଜ୍ଞାନ ଶାଖାରେ ତାଙ୍କୁ ଏହି ପୁରସ୍କାର ମିଳିଥିଲା ।

**ସି.ଭି. ରମନ୍ ବାଙ୍ଗାଲୋର୍‌ଠାରେ ପ୍ରତିଷ୍ଠା କରିଥିଲେ 'ରାମନ୍ ରିସର୍ଚ୍ଚ ଇନ୍‌ଷ୍ଟିଚିଉଟ୍' ବା ରାମନ୍ ଗବେଷଣା ପ୍ରତିଷ୍ଠାନ । ସେଠାରେ ଗବେଷଣା ସହକାରୀ ଭାବରେ କାମ କରିବା ନିମନ୍ତେ ଦରଖାସ୍ତ ମଗାଗଲା । ବହୁତ ପ୍ରାର୍ଥୀ ଏଥିପାଇଁ ଦରଖାସ୍ତ ପକେଇଥିଲେ । ସେମାନଙ୍କୁ ସାକ୍ଷାତକାର ପାଇଁ ଡ଼କେଇଲେ ରାମନ୍ । ପ୍ରତ୍ୟେକ ପ୍ରାର୍ଥୀଙ୍କୁ ପ୍ରଶ୍ନ ପଚାରି ପରୀକ୍ଷା କଲେ । ଜଣେ ଦରଖାସ୍ତକାରୀଙ୍କୁ ଗବେଷଣା ସହକାରୀ ପଦପାଇଁ ଅଯୋଗ୍ୟ ବୋଲି ବିଚାରିଲେ ସେ । ତେଣୁ, ତାଙ୍କୁ ଘରକୁ ଫେରିଯିବାକୁ ରାମନ୍ ନିଷ୍ପତ୍ତି ଶୁଣେଇଦେଲେ ।**

ସାକ୍ଷାତକାର ପରୀକ୍ଷାସାରି ରାମନ୍ ବାହାରି ଆସିଲେ । ସେତେବେଳକୁ କୋଠରି ବାହାରେ ଠିଆ ହୋଇ ରହିଥାନ୍ତି ସେହି ଅଯୋଗ୍ୟ ଘୋଷିତ ପ୍ରାର୍ଥୀ ଜଣକ । ତାଙ୍କୁ ଦେଖି ପକାଇ ରାମନ୍ ରାଗି ଉଠି ପଚାରିଲେ, "ଏଠି କଣ କରୁଛ ? କହିଲି ପରା, ଆମେ ତମକୁ ଗବେଷଣା କାମ ପାଇଁ ନେଇପାରିବୁନି । କାହିଁକି ଏଠାରେ ବୃଥାଟାରେ ଲସରପସର ହେଉଛ ?"

ପ୍ରାର୍ଥୀ ଜଣକ ବଡ଼ ବିନୟର ସହ ଉତ୍ତର ଦେଲେ, "ସାର୍, ମୁଁ ଅନୁପଯୁକ୍ତ ଏବଂ ଆପଣଙ୍କ ମନଲାଖି ନୁହେଁ ବୋଲି ଜାଣେ । ଚାକିରୀ ପାଇଁ ଆପଣଙ୍କୁ ପୁଣି ଥରେ ଅନୁରୋଧ କରିବା ନିମନ୍ତେ ମୁଁ ଏଠାରେ ଅପେକ୍ଷା କରିନି । ସାକ୍ଷାତକାର ପରୀକ୍ଷାପାଇଁ ଆସିଥିବାରୁ ମୋର ଯେତିକି ଗସ୍ତଖର୍ଚ୍ଚ ପାଇବା କଥା, ଆପଣଙ୍କ ଅଫିସ୍ ଭୁଲ୍‌ରେ ତାହାଠାରୁ ବେଶୀ ଗସ୍ତଖର୍ଚ୍ଚ ଦେଇ ଦେଇଛି ମୋତେ । ସେଇ ବଳକା ଟଙ୍କାତକ ଫେରେଇ ଦେବାପାଇଁ ମୁଁ ଏଠାରେ ଠିଆ ହୋଇଛି । ମୋର ଭୁଲ୍ ଥିଲେ ମୋତେ କ୍ଷମା ଦେବାକୁ ଅନୁରୋଧ ।

ସି.ଭି. ରମନ୍ ଆଶ୍ଚର୍ଯ୍ୟ ହୋଇ କହି ପକାଇଲେ, ''ଓ, ଏମିତି କଥା''? ତା ପରେ ସେହି ପ୍ରାର୍ଥୀଙ୍କ କାନ୍ଧ ଉପରେ ହାତ ପକେଇ ତାଙ୍କୁ ନେଇଗଲେ ନିଜ କୋଠରି ଭିତରକୁ । କୋଠରି ଭିତରେ ତାଙ୍କୁ ବସେଇ କହିଲେ, ''ଶୁଣ, ଗବେଷଣା ସହକାରୀ ଚାକିରୀ ପାଇଁ ତୁମେ ଯୋଗ୍ୟ ବୋଲି ମୋର ମତ । ତେଣୁ, କାଲିଠାରୁ ତୁମେ କାର୍ଯ୍ୟରେ ଯୋଗଦାନ କରିବ । ଏହା ଅବଶ୍ୟ ଠିକ୍ ଯେ ତୁମେ ପଦାର୍ଥ ବିଜ୍ଞାନରେ ଦୁର୍ବଳ । ତେଣୁ, ମୁଁ ତୁମକୁ ପଦାର୍ଥ ବିଜ୍ଞାନ ପଢ଼େଇବାର ଦାୟିତ୍ୱ ନେବି । କିନ୍ତୁ, ତୁମେ ବଡ଼ ଚରିତ୍ରବାନ୍ । ତୁମର ଉତ୍ତମ ଚରିତ୍ର ଏବଂ ସାଧୁତା ମୋ ପାଇଁ ବେଶୀ ଗୁରୁତ୍ୱପୂର୍ଣ୍ଣ । ତୁମର ସାଧୁତା ମୋତେ ଖୁବ୍ ଅଭିଭୂତ କରିଛି ।''

ପ୍ରାର୍ଥୀ ଜଣକ ରାମନ୍‌ଙ୍କ ପାଦଛୁଇଁ ନିଜର କୃତଜ୍ଞତା ଜଣେଇଲେ ଏବଂ ରାମନ୍‌ଙ୍କଠାରୁ ଆଶୀର୍ବାଦ ଭିକ୍ଷା କଲେ ।

ଡ଼କ୍ଟର୍ ରାମନ୍‌ଙ୍କ ଯୁଗାନ୍ତକାରୀ ଆବିଷ୍କାର 'ରାମନ୍ ପ୍ରଭାବ' ବା 'ରାମନ୍ ଏଫେକ୍ଟ୍' ନାଆଁରେ ପ୍ରସିଦ୍ଧ । ୧୯୨୮ ମସିହା ଫେବୃଆରୀ ୨୮ ତାରିଖରେ ରାମନ୍ ନିଜେ ଏହି ଆବିଷ୍କାର ସମ୍ବନ୍ଧରେ ପ୍ରଥମେ ଘୋଷଣା କରିଥିଲେ । ରାମନ୍‌ଙ୍କୁ ସମ୍ମାନ ଜଣେଇ ଏହି ଦିନଟିକୁ ଆମ ଦେଶରେ 'ଜାତୀୟ ବିଜ୍ଞାନ ଦିବସ' ବା ନାସନାଲ ସାଇନ୍ସ୍ ଡ଼େ' ଭାବରେ ପାଳନ କରାଯାଉଛି ।



# ଚାକରାଣୀରୁ ବୈଜ୍ଞାନିକ

ଅନ୍ଧାର ରାତିରେ ଆକାଶକୁ ଚାହିଁ ତୁମେ ଦେଖିଥିବ ଗ୍ରହ, ନକ୍ଷତ୍ର ଏବଂ ଉପଗ୍ରହ । ଚନ୍ଦ୍ର ହେଉଛି ଗୋଟିଏ ଉପଗ୍ରହ । ଆମେ ଯାହାକୁ କୁଆଁତାରା ବୋଲି କହୁ, ସେ ହେଲା ଶୁକ୍ରଗ୍ରହ । ସୂର୍ଯ୍ୟ ହେଉଛି ଏକ ନକ୍ଷତ୍ର । ତୁମମାନଙ୍କ ଭିତରୁ କେହି କେହି ଧୂମକେତୁ ମଧ୍ୟ ଦେଖିଥିବ । ଗ୍ରହ, ନକ୍ଷତ୍ର, ଉପଗ୍ରହ ଇତ୍ୟାଦି ବିଷୟରେ ଜାଣିବା ପାଇଁ ତୁମକୁ ଜ୍ୟୋତିର୍ବିଜ୍ଞାନ ପଢ଼ିବା ଦରକାର ।

ଯେଉଁମାନେ ଜ୍ୟୋତିର୍ବିଜ୍ଞାନ ବିଷୟରେ ପଢ଼ାପଢ଼ି ଏବଂ ଗବେଷଣା କରନ୍ତି, ସେମାନଙ୍କୁ କୁହାଯାଏ ଜ୍ୟୋତିର୍ବିଜ୍ଞାନୀ । ଆମ ଦେଶର ସୁବ୍ରମନିୟାନ୍ ଚନ୍ଦ୍ରଶେଖର ତାରାମାନଙ୍କ ଉପରେ ଗବେଷଣା କରି ନୋବେଲ୍ ପୁରସ୍କାର ପାଇଛନ୍ତି । କିନ୍ତୁ, ଏହି ଶାଖାରେ କାମ କରୁଥିବା ମହିଳା ବୈଜ୍ଞାନିକ ମାନେ ବିଶେଷ ଜଣାଶୁଣା ନୁହଁନ୍ତି । ହେଲେ ଜଣେ ଜଣାଶୁଣା ମହିଳା ଜ୍ୟୋତିର୍ବିଜ୍ଞାନୀ କଥା କହୁଛି ତୁମକୁ ।

ତାଙ୍କ ନାଁ କାରୋଲିନ୍ ହର୍ସେଲ୍ । ଏଣିକି ଆମେ ତାଙ୍କୁ କାରୋଲିନ୍ ନାଆଁରେ ହିଁ ଜାଣିବା । ୧୭୫୦ ମସିହାରେ ଜର୍ମାନୀ ଦେଶର ହାନୋଭର ଠାରେ ଜନ୍ମ ହୋଇଥିଲେ କାରୋଲିନ୍ । ସେ ଥିଲେ ଝିଅ । ତେଣୁ, ତାଙ୍କ ବାପା ମା ତାଙ୍କୁ ବେଶୀ ପଢ଼ାପଢ଼ି କରେଇଲେନି । ବରଂ କହିଲେ, "ତୋର ପଢ଼ାପଢ଼ି କରିବା ଦରକାର ନାହିଁ । ତୁ ଘରେ ରହି ଭାଇମାନଙ୍କ ଦେଖାଶୁଣା କର ।"

କାରୋଲିନ୍‌ର ବାପା ଥିଲେ ଜଣେ ସଂଗୀତଜ୍ଞ । ସେ କାରୋଲିନ୍‌କୁ ଧମକ ଦେଇ କହିଥିଲେ, "କାରୋଲିନ୍, ବାହାହେବା କଥା କେବେ ମନକୁ ଆଣିବୁନି । ଏକେତ ତୁ ଦେଖିବାକୁ ସୁନ୍ଦରୀ ନୋହୁଁ । ଦ୍ୱିତୀୟରେ, ତୋତେ ବାହା ଦେବାକୁ ମୋ ପାଖରେ ଟଙ୍କା ପଇସା ବି ନାହିଁ । ତାହାଛଡ଼ା, ତୋତେ ବାହାହେବାକୁ ବି ପୁଅପିଲା ସହଜରେ ରାଜି ହେବେନି ।"

କାରୋଲିନ୍‌ଙ୍କର ଚାରା ଅବା କଣ ଥିଲା । ସେ ଘରେ ରହି ଘରର ଯାବତୀୟ କାମଧନ୍ଦା କଲେ । ବିନା ଦରମାରେ ସେ ହୋଇଗଲେ ନିଜ ଘରର ଚାକରାଣୀ ।

କିଛିଦିନ ପରେ ତାଙ୍କର ବାପା ମରିଗଲେ । ସେତେବେଳେ ତାଙ୍କର ଜଣେ ଭାଇ ଥାଆନ୍ତି ଇଂଲଣ୍ଡରେ । ସେହି ଭାଇଙ୍କ ନାଁ ଉଇଲିୟମ୍ । କାରୋଲିନ୍ ଏବଂ ଉଇଲିୟମଙ୍କ ଭିତରେ ଖୁବ୍ ଭଲ ପଡ଼େ । କାରୋଲିନ୍‌କୁ ଇଂଲଣ୍ଡ ନେଇଯିବା ପାଇଁ ମାଆଙ୍କ ଅନୁମତି ମାଗିଲେ ସେ । କିନ୍ତୁ ମାଆ କାରୋଲିନ୍‌କୁ ଛାଡ଼ିବା ପାଇଁ ରାଜି ହେଲେନି । ସେ ଉଇଲିୟମଙ୍କୁ କହିଲେ, ‘‘କାରୋଲିନ୍ ଘର ଛାଡ଼ି ଇଂଲଣ୍ଡ ଚାଲିଗଲେ ଏ ଘରେ କାମଧନ୍ଦା କରିବ କିଏ ? କିଏ ମାଜିବ ବାସନ କୁସନ ? କିଏ ଘରେ ଝାଡୁଦେବ ? ବଜାର ସଉଦା କରିବ ପୁଣି କିଏ ? କିଏ କରିବ ରୋଷେଇ ? କିଏ ଲୁଗା କାଚିବ ? ତୋର ଯଦି କାରୋଲିନ୍‌କୁ ପାଖକୁ ନେବାକୁ ଇଚ୍ଛା, ତେବେ ଘରେ ରଖିବାକୁ ପଡ଼ିବ ଚାକରଟିଏ । ଆଉ ସେଇ ଚାକରର ଦରମା ମାସକୁ ମାସ ତୋତେ ହିଁ ଦେବାକୁ ପଡ଼ିବ । ତୁ ଯଦି ଏଥିରେ ରାଜି, ତେବେ କାରୋଲିନ୍‌କୁ ଲଣ୍ଡନ ନେଇଯିବାରେ ମୁଁ ଆପତ୍ତି କରିବିନି ।’’

ଉଇଲିୟମ୍ ମା’ଙ୍କ କଥାରେ ରାଜି ହେଲେ । ମାସକୁ ମାସ ଚାକରର ଦରମା ପଠେଇବା ପାଇଁ କଥାଦେଇ କାରୋଲିନ୍‌କୁ ସାଂଗରେ ନେଇ ଫେରିଗଲେ ଇଂଲଣ୍ଡ୍ ।

ନିଜ ବାପାଙ୍କ ଭଳି ଉଇଲିୟମ୍ ମଧ୍ୟ ଥିଲେ ଜଣେ ସଂଗୀତଜ୍ଞ । ଏହାଛଡ଼ା ସେ ନିଜ ହାତରେ ତିଆରି କରୁଥିଲେ ଦୂରବୀକ୍ଷଣ ଯନ୍ତ୍ର । ଦୂରବୀକ୍ଷଣ ଯନ୍ତ୍ରରେ ଆକାଶରେ ଥିବା ଗ୍ରହ ନକ୍ଷତ୍ର ଗୁଡ଼ିକୁ ଲକ୍ଷ୍ୟ କରୁଥିଲେ । ଗ୍ରହ ନକ୍ଷତ୍ରଙ୍କୁ ଦେଖିବା ଥିଲା ତାଙ୍କର ବଡ଼ ସଉକ । ମନଧ୍ୟାନ ଦେଇ ଗ୍ରହନକ୍ଷତ୍ରଙ୍କୁ ଦେଖିବା କାଳରେ ସେ ଆବିଷ୍କାର କଲେ ଗୋଟିଏ ନୂତନ ଗ୍ରହ । ସେହି ନୂଆଗ୍ରହଟିର ନାଁ ରଖାଯାଇଛି ୟୁରାନସ । ୟୁରାନସକୁ ସେ ଆବିଷ୍କାର କରିଥିଲେ ୧୭୮୧ ମସିହାରେ । ତାହାଛଡ଼ା ଉଇଲିୟମ୍ ଆବିଷ୍କାର କରିଥିଲେ ପାଖାପାଖି ୨୫୦୦ ସଂଖ୍ୟକ ନକ୍ଷତ୍ରପୁଞ୍ଜ ଏବଂ ନୀହାରିକା ।

ଉଇଲିୟମ୍ ବ୍ୟସ୍ତ ରହନ୍ତି ଦୂରବୀକ୍ଷଣ ଯନ୍ତ୍ର ତିଆରି ଏବଂ ଗ୍ରହ ନକ୍ଷତ୍ରଙ୍କୁ ପରୀକ୍ଷା କରିବାରେ । ତେଣୁ, ତାଙ୍କୁ ଜମା ଫୁରୁସତ ମିଳେନି । ଏହି କାରଣରୁ, ଭାଇଙ୍କୁ ସବୁ ପ୍ରକାରର ସାହାଯ୍ୟ କରିବାକୁ ଲାଗିଲେ କାରୋଲିନ୍ । ଦୂରବୀକ୍ଷଣ ଯନ୍ତ୍ରର ଲେନ୍‌ସ୍ ତିଆରି କରିବାରେ ସେ ଉଇଲିୟମ୍‌ଙ୍କୁ ସାହାଯ୍ୟ କରନ୍ତି । ସେ ଯାହା ଲେଖିବାକୁ କହନ୍ତି, ତାକୁ ଲେଖିରଖନ୍ତି । ଭାଇ ଯାହା ଆବିଷ୍କାର କରନ୍ତି, ତାକୁ ନିଜେ ଦୂରବୀକ୍ଷଣରେ ଦେଖି ଠିକ୍ କି ଭୁଲ୍ ଜଣେଇ ଦିଅନ୍ତି । ବିଜ୍ଞାନ ପ୍ରବନ୍ଧମାନ ଲେଖିବାରେ ଭାଇଙ୍କୁ ସାହାଯ୍ୟ କରନ୍ତି ମଧ୍ୟ । ଏହିକାମ କରି କରି ଗ୍ରହ ନକ୍ଷତ୍ର ଗୁଡ଼ିକ ପ୍ରତି କାରୋଲିନ୍‌ଙ୍କଠାରେ

ମଧ୍ୟ ଆଗ୍ରହ ଜନ୍ମିଲା । ତେଣୁ, ଉଇଲିୟମ୍ କୌଣସି କାମରେ ଇଂଲଣ୍ଡ ବାହାରକୁ ଗଲେ କାରୋଲିନ୍ ଲାଗିଯାଆନ୍ତି ଗ୍ରହ ନକ୍ଷତ୍ରକୁ ଟିକିନିଖି ପରୀକ୍ଷା କରିବାରେ । ଦୂରବୀକ୍ଷଣ ସାହାଯ୍ୟରେ ଆକାଶରେ ଖୋଜି ବସନ୍ତି ନୂଆ ନୂଆ ତାରା ବା ନକ୍ଷତ୍ର ଇତ୍ୟାଦିକୁ ।

ଏହା ଫଳରେ ୧୭୮୩ ମସିହାରେ କାରୋଲିନ୍ ପ୍ରଥମ କରି ଆବିଷ୍କାର କଲେ ଗୋଟିଏ ନୂଆ ନୀହାରିକା । ସେହି ବର୍ଷ ଆଉ ଦୁଇଟି ନୂଆ ନୀହାରିକା ମଧ୍ୟ ଆବିଷ୍କାର କଲେ ସେ । ୧୭୮୬ ମସିହାରେ ସେ ଏକ ନୂତନ ଧୂମକେତୁର ସନ୍ଧାନ ପାଇଲେ । ୧୭୯୭ ମସିହା ପୂର୍ବରୁ କାରୋଲିନ୍ ଆଉ ସାତଟି ଧୂମକେତୁକୁ ଠାବ କରିପାରିଲେ । ଏହିପରି ଭାବରେ ଜଣେ ଜ୍ୟୋତିର୍ବିଜ୍ଞାନୀ ଭାବରେ ସେ ହୋଇଗଲେ ବେଶ୍ ଜଣାଶୁଣା ।

୧୮୨୨ ମସିହାରେ ଉଇଲିୟମଙ୍କର ମୃତ୍ୟୁ ହେଲା । ତେଣୁ, ଇଂଲଣ୍ଡ ଛାଡ଼ି କାରୋଲିନ୍ ଫେରିଆସିଲେ ନିଜର ଜନ୍ମସ୍ଥାନ ହାନୋଭର୍‌କୁ । ସେଠାରେ ନିଜ ପୁତୁରା (ଉଇଲୟମଙ୍କ ପୁଅ)ଙ୍କ ସହ ମିଶି ଜ୍ୟୋତିର୍ବିଜ୍ଞାନ ବିଷୟରେ ଗବେଷଣା ଚଳେଇଲେ ।

ଜଣେ ମହିଳା ଜ୍ୟୋତିର୍ବିଜ୍ଞାନୀ ଭାବରେ ଖୁବ୍ ପ୍ରଶଂସା ପାଇଲେ କାରୋଲିନ୍ । ଇଂଲଣ୍ଡର ରାଜା ତାଙ୍କ ପାଇଁ ଖଞ୍ଜିଦେଲେ ନିୟମିତ ପେନ୍‌ସନ୍ । ରୟାଲ୍ ଜ୍ୟୋତିର୍ବିଜ୍ଞାନ ସୋସାଇଟି ତାଙ୍କୁ ସ୍ୱର୍ଣ୍ଣପଦକ ଦେଇ ସମ୍ମାନ ଜଣାଇଲା । ପ୍ରୁସିଆର ରାଜା ମଧ୍ୟ ବିଜ୍ଞାନ ବିଷୟରେ କାରୋଲିନଙ୍କ ଅବଦାନ ଯୋଗୁଁ ତାଙ୍କୁ ପ୍ରଦାନ କରିଥିଲେ ସୁନାର ମେଡ଼ାଲ୍ ।

ବେଳଥିଲା, ଯେତେବେଳେ କାରୋଲିନଙ୍କୁ ବାହା ହେବା ପାଇଁ କେହି ରାଜି ହୋଇନଥିଲେ । ନିଜ ଘରେ ସେ ତୁଲାଉଥିଲେ ଚାକରାଣୀ କାମ । ହେଲେ ନିଜର ଆନ୍ତରିକ ଉଦ୍ୟମ ବଳରେ ସେ ହୋଇପାରିଲେ ଜଣେ ନାମଜାଦା ବୈଜ୍ଞାନିକ । ଏପରିକି ରାଜାମାନଙ୍କଠାରୁ ମଧ୍ୟ ସେ ସମ୍ମାନ ହାସଲ କରିପାରିଲେ ।

ଉଦ୍ୟମ କରି ଚାଲିଲେ ଯେ ଦିନେ ନା ଦିନେ ସଫଳତା ମିଳେ, କାରୋଲିନ୍ ହର୍ସେଲ୍‌ଙ୍କ ଜୀବନରୁ ଏହାର ପ୍ରମାଣ ମିଳେ ।



# ଅଙ୍କକଷା ଯୋଗୁଁ ରହିଲା ପ୍ରାଣ

ବଡ଼ ଲମ୍ବା ନାଁ ଟିଏ ତାଙ୍କର । ନାଆଁଟି ହେଲା, ଇଗୋର୍ ୟେଭ୍‌ଜେନିଏଭିଚ୍ ଟାମ୍ । ସମସ୍ତେ କିନ୍ତୁ ତାଙ୍କୁ 'ଇଗୋର୍ ଟାମ୍' କିମ୍ବା 'ଟାମ୍' ବୋଲି ଡ଼ାକିଥାନ୍ତି । ସେ ଥିଲେ ଜଣେ ବିଖ୍ୟାତ ପଦାର୍ଥବିଜ୍ଞାନୀ । ୧୮୯୫ ମସିହାରେ ରୁଷିଆ ଦେଶରେ ସେ ଜନ୍ମ ହୋଇଥିଲେ । ତାଙ୍କର ମୃତ୍ୟୁ ହେଲା ୧୯୭୧ ମସିହାରେ ।

୧୯୧୦ ମସିହା ପାଖାପାଖିର କଥା । ସେତେବେଳେ ରୁଷିଆର ଗୃହଯୁଦ୍ଧ ଲାଗିଥାଏ । କାହା କାହା ଭିତରେ ଯୁଦ୍ଧ ଲାଗିଥାଏ ତାହା କହିବା କଷ୍ଟ । କାରଣ ଯିଏ ପାରିଲା ସେ ଗୋଟିଏ ଦଳ ଗଢ଼ି ଯୁଦ୍ଧରେ ମାତି ଯାଉଥିଲା । ସେହି ଦଳ ସବୁ ଗାଁକୁ ଗାଁ ବୁଲୁଥିଲେ । ଯିଏ ହାବୁଡ଼େ ପଡ଼ିଲା ତାଙ୍କୁ ହାଣି ପକାଉଥିଲେ । ନିଜ ନିଜ ଭିତରେ ବି ହଣାକଟା ହେଉଥିଲେ, ହେଉଥିଲେ ଗୁଳି ମରାମରି ।

ସେତେବେଳକୁ ଇଗୋର୍ ଟାମ ଯୁବକ । ସେହି କମ୍ ବୟସରେ ମଧ୍ୟ ସେ ଥିଲେ ଓଡ଼େଶା ନାମକ ଅନୁଷ୍ଠାନରେ ପଦାର୍ଥ ବିଜ୍ଞାନର ପ୍ରଧାନ ଅଧ୍ୟାପକ ।

ଯୁଦ୍ଧ ଲାଗିଥିବା ଯୋଗୁଁ ଖାଦ୍ୟଦ୍ରବ୍ୟ ମିଳୁ ନ ଥାଏ । ପଇସା ବି ନ ଥାଏ ସମସ୍ତଙ୍କ ପାଖରେ । ଲୋକେ ନିଜ ଘରେ ଥିବା ଜିନିଷପତ୍ରକୁ ବଦଳ ଦେଇ ଖାଦ୍ୟ ପଦାର୍ଥ କିଣୁଥିଲେ ।

ଟାମ୍ ତାଙ୍କ ଘରୁ ସଂଗ୍ରହ କଲେ ରୁପା ଚାମଚଟିଏ । ତାକୁ ପକେଟ୍‌ରେ ପୂରେଇ ଚାଲିଲେ ପାଖରେ ଥିବା ଗୋଟିଏ ଗାଆଁକୁ । ରୂପା ଚାମଚଟିକୁ ଦେଇ କୁକୁଡ଼ାଟିଏ କିଣି ଆଣିବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ଗାଁକୁ ଯାଉ ଯାଉ ରାସ୍ତାରେ ଦଳେ ସୈନ୍ୟଙ୍କ ହାବୁଡ଼େ ପଡ଼ିଗଲେ ଟାମ୍ । ସେହି ସୈନ୍ୟମାନେ ଥିଲେ ଲାଲ୍‌ବାହିନୀର ବିରୋଧୀ । ସୈନ୍ୟମାନେ ଟାମ୍‌ଙ୍କୁ ଧରିନେଇ ନିଜ ନେତାଙ୍କ ଆଗରେ ପହଞ୍ଚେଇଦେଲେ ।

ସୈନ୍ୟମାନଙ୍କ ନେତା ଦେଖାଯାଉଥିଲା ଖୁବ୍ ଭୟଙ୍କର । ସେ ଥିଲା ଅତି ନିଷ୍ଠୁର । ମୁହଁରେ ତାର ଲମ୍ବା ଦାଢ଼ି । ମୁଣ୍ଡରେ ପଶୁଲୋମର ତିଆରି କଳାଟୋପି । ଓସାରିଆ

ଛାତିରେ ପଇତା ଭଳି ଲମ୍ବି ଥାଏ ମେସିନ୍‌ଗନ୍‌ର ଗୁଳି ଗୁଡ଼ିକର ମାଳ । ଅଣ୍ଟାରେ ବନ୍ଧା ହୋଇଥାଏ କେଇଟା ହାତବୋମା ।

ନେତାଜଣକ ଟାମ୍‌ଙ୍କୁ ଦେଖି ଆଗେ ବହେ ଶୋଧି ଦେଇଗଲା । ଗର୍ଜନ କରି, ହୁଙ୍କାର ଛାଡ଼ି କହିଲା, "ବଦ୍‌ମାସ୍ କମ୍ୟୁନିଷ୍ଟ, ଏକମାତ୍ର ପ୍ରାଣଦଣ୍ଡ ଯେ ତୋ ପାଇଁ ଲୋଡ଼ା, ତା କଣ ଜାଣିନୁ ?"

ଟାମ୍ ଡ଼ରିମରି ଉତ୍ତର ଦେଲେ, "ମୁଁ ଆଜ୍ଞା କମ୍ୟୁନିଷ୍ଟ ନୁହେଁ । ଓଡ଼େଶାରେ ମୁଁ ଜଣେ ପ୍ରଫେସର । ସେଠାରେ ଛାତ୍ରମାନଙ୍କୁ ପଢ଼େଇବା ମୋର କାମ । କିଛି ଖାଇବା ଜିନିଷ ଯୋଗାଡ଼ କରିବା ନିମନ୍ତେ ମୁଁ ଗାଆଁକୁ ଯାଉଥିଲି । ଆପଣଙ୍କ ସୈନ୍ୟମାନେ ମୋତେ ବାଟରୁ ଧରି ଆଣିଲେ ।"

"ମୂର୍ଖ, ମୋ ଆଗରେ ପୁଣି ବଦମାସି ? ତାହା ମିଛ ? ନିଜକୁ ପ୍ରଫେସର୍ ବୋଲି କହୁଚୁ ? କି' ପାଠ ତେବେ ପଢ଼ାଉଚୁ ପିଲାଙ୍କୁ ?"- ଚିତ୍କାର କରି କହିଲା ସେ ନେତାଜଣକ ।

"ଛାତ୍ରମାନଙ୍କୁ ମୁଁ ଗଣିତ ପଢ଼ାଏ" - ଉତ୍ତର ଦେଲେ ଟାମ୍ ।

"ସତ କହୁଚୁ ତ ?"

"ହଁ, ଆଜ୍ଞା ।"

"ଗଣିତ ଯଦି ପଢ଼ାଉଚୁ, ତେବେ ମୁଁ ତୋତେ ଖୁବ୍ ଜଟିଳ ଅଙ୍କଟିଏ ଦେଉଚି । ଅଙ୍କଟିକୁ କଷି ଏବେ ମୋତେ ଦେଖେଇ ଦେ' ତ । ଅଙ୍କଟିକୁ ସମାଧାନ କରିଦେଲେ ତୋତେ ମୁଁ ଛାଡ଼ିଦେବି । ତା ଯଦି କରି ନ ପାରିବୁ, ତେବେ -" ଏଇଆ କହି ସେ ଟାମ୍‌ଙ୍କୁ ବଢ଼େଇ ଦେଲା ଅଙ୍କଟି ଲେଖା ହୋଇଥିବା କାଗଜ ଖଣ୍ଡେ ।

ଅଙ୍କଟି ସମାଧାନ କରି ନ ପାରିଲେ ନେତାଟି ହାତରେ ମରିବା ନିଶ୍ଚିତ । ଥରଥର ହାତରେ କାଗଜଟିକୁ ନେଲେ ଇଗୋର୍ ଟାମ୍ । ଦୁଇ ତିନି ଥର ପଢ଼ି ପକେଇଲେ ଅଙ୍କଟିକୁ । ସତକୁ ସତ ତାହା ଥିଲା ଅତି ଜଟିଳ । ଗଣିତରେ ବିଶେଷ ଜ୍ଞାନ ନ ଥିଲେ ତାକୁ କଷିବା ସହଜ ନୁହେଁ ।

ଅଙ୍କ କଷିବାରେ ଟାମ୍ ଲାଗି ପଡ଼ିଥାନ୍ତି । ତାଙ୍କ ଆଡ଼କୁ ବନ୍ଧୁକ ଦେଖେଇ ଠିଆ ହୋଇଥାନ୍ତି ସୈନ୍ୟମାନେ ।

ବଡ଼ ସୌଭାଗ୍ୟର କଥା ଯେ, ଟାମ୍ ତାକୁ ସମାଧାନ କରିଦେଲେ । ଅଙ୍କଟି କଷିସାରି ନେତାର ହାତରେ ଦେଇଦେଲେ କାଗଜ ଖଣ୍ଡିକୁ ।

ନେତା ଜଣକ ସଂଗେ ସଂଗେ ତାକୁ ପଢ଼ିନେଲା । ତାର ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ଓଠରେ ଦେଖାଦେଲା ମୁରୁକି ହସା । ଖୁବ୍ ଖୁସି ହୋଇ ସେ ମୁକ୍ତ କରିଦେଲା ଇଗୋର୍‌ଟାମ୍‌ଙ୍କୁ ।

କିନ୍ତୁ, ସେହି ନେତା ଜଣକ କିଏ ? ବିଦ୍ରୋହରେ ସାମିଲ୍ ହୋଇଥିଲେ ବି କଣ ସେ ଥିଲେ ପ୍ରକୃତରେ ଜଣେ ଗଣିତ ପ୍ରଫେସର ? କେହି କେହି ବିଶ୍ୱାସ କରନ୍ତି ଯେ ସେ ହୁଏତ ଜଣେ ଗଣିତ ପ୍ରଫେସର ହୋଇପାରିଥିବେ । କାରଣ, ସେତେବେଳେ ବହୁ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଗୃହଯୁଦ୍ଧରେ ଯୋଗ ଦେଇଥିଲେ । କିଏ ଥିଲେ ଡ଼ାକ୍ତର ତ ଆଉ କିଏ ଇଞ୍ଜିନିୟର୍ । କିଏ ପ୍ରଫେସର୍ ତ କିଏ ବୈଜ୍ଞାନିକ !

ତୁମ୍ଭେମାନେ ଶୁଣି ଆଶ୍ଚର୍ଯ୍ୟ ହେବ ଯେ, ସେଦିନ ଗୁଳି ମୁହଁରୁ ରକ୍ଷା ପାଇଥିବା ଇଗୋର୍ ଟାମ ୧୯୫୮ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ । ଅଙ୍କଟିକୁ କଷି ପାରିନଥିଲେ ବିଦ୍ରୋହୀଙ୍କ ହାତରେ ସେଦିନ ତାଙ୍କର ଅକାଳ ମୃତ୍ୟୁ ହୋଇଥାନ୍ତା । ପୃଥିବୀମାତା ହରେଇଥାନ୍ତା ତାର ଜଣେ ସୁଯୋଗ୍ୟ ସନ୍ତାନକୁ ।



# ଏମିତି ବି' ହୁଏ

ତୁମ୍ଭମାନଙ୍କ ଭିତରୁ କେହି କେହି ଆଇଡାକ୍ ରାବିଙ୍କ ନାଆଁ ହୁଏତ ଶୁଣିଥିବ । ରାବି ଥିଲେ ଜଣେ ବିଖ୍ୟାତ ପଦାର୍ଥ ବିଜ୍ଞାନୀ । ପଦାର୍ଥ ବିଜ୍ଞାନରେ ସେ ନୋବେଲ୍ ପୁରସ୍କାର ପାଇଥିଲେ ।

ଦିନେ ସେ ତାଙ୍କ କୋଠରି ଭିତରେ ବସି ଥାଆନ୍ତି । ତାଙ୍କ ସାମନା ଚଉକିରେ ବସିଥାଆନ୍ତି ତାଙ୍କର ଜଣେ ଛାତ୍ର । କୌଣସି ଏକ ଗବେଷଣା ବିଷୟରେ ଉଭୟଙ୍କ ମଧ୍ୟରେ ଆଲୋଚନା ଚାଲିଥାଏ । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଗଲା କୋଠରି ବାହାରେ ଠିଆ ହୋଇଥିବା ଜଣେ ବାଳକ ଉପରେ । ପିଲାଟି ଯେ ତାଙ୍କୁ ଦେଖା କରିବାକୁ ଚାହୁଁଛି, ଏଇଆ ଭାବି ରାବି ପିଲାଟିକୁ ପାଖକୁ ଡ଼ାକିଲେ । ରାବି ତାକୁ ପଚାରିଲେ, "କଅଣ ? ମୋ ପାଖରେ କିଛି କାମ ଥିଲା ?"

ପିଲାଟି ମୁଣ୍ଡ ଟୁଙ୍ଗାରି ତାଙ୍କ ହାତକୁ ବଢ଼ାଇଦେଲା କାଗଜ ଖଣ୍ଡେ । କାଗଜଟିରେ ଲେଖା ରହିଥିଲା ପଦାର୍ଥ ବିଜ୍ଞାନର ଏକ ସମସ୍ୟାର ସମାଧାନ ସୂତ୍ର ।

ରାବି କାଗଜ ଖଣ୍ଡକ ନେଇ ପଢ଼ି ବସିଲେ । ପଢ଼ିବା ସମୟରେ ତାଙ୍କ ମୁଖମଣ୍ଡଳରେ ଉକୁଟି ଉଠୁଥିଲା ତୃପ୍ତି । ଆତ୍ମହରା ହୋଇ ଉଠୁଥିଲେ ସେ । ପଢ଼ିସାରି ଅତି ଖୁସିରେ ପିଲାଟିକୁ ଚାହିଁବାମାତ୍ରେ ପିଲାଟି ତାଙ୍କୁ ବଢ଼େଇଦେଲା ଆଉ ଖଣ୍ଡେ କାଗଜ । ଦ୍ୱିତୀୟ କାଗଜ ଖଣ୍ଡକ ମଧ୍ୟ ବେଶ୍ ମନୋଯୋଗ ଦେଇ ପଢ଼ିନେଲେ ରାବି ।

ପ୍ରଥମ କାଗଜ ଖଣ୍ଡକରେ ପିଲାଟିର ପାରିବା ପଣିଆଁର ପ୍ରମାଣ ରହିଥିଲା । କିନ୍ତୁ, ଦ୍ୱିତୀୟ କାଗଜଟିରେ ଲେଖା ରହିଥିଲା ତାର ନ ପାରିବା ପଣିଆଁର ପ୍ରମାଣ । ତାହା ଥିଲା ତାର କଲେଜ୍ ମାର୍କଲିଷ୍ଟ । ଅଧିକାଂଶ ବିଷୟରେ ସେ ଫେଲ୍ ହୋଇଥିବାର ସୂଚନା ମିଳୁଥିଲା ସେଥିରୁ ।

ପିଲାଟିର ନାଁ ଜୁଲିଆନ୍ ସୁଇଞ୍ଜର୍ । ସେ ଥିଲା ସ୍ଥାନୀୟ ଏକ କଲେଜର ପ୍ରଥମ ବାର୍ଷିକ ସ୍ନାତକ ଛାତ୍ର । ସେତେବେଳେକୁ ତାର ବୟସ ଜମା ୧୬ ବର୍ଷ ।

ବଡ଼ ବିନୀତ ଭାବରେ ସେ ରାବିଙ୍କୁ କହିଲା, ‘‘ସାର୍‌, ମୁଁ କେତେଟା ବିଷୟରେ ଅକୃତକାର୍ଯ୍ୟ ହୋଇଥିବାରୁ, ମୋତେ ଉପରଶ୍ରେଣୀକୁ ଉଠିବା ନିମନ୍ତେ କଲେଜ୍‌ର ଅଧ୍ୟକ୍ଷ ମନା କରିଦେଲେ । ଆପଣ ଦୟାକରି ସୁପାରିଶ କଲେ ମୁଁ ଉପର କ୍ଲାସରେ ନା ଲେଖାଇପାରନ୍ତି ।’’

ପିଲାଟିର ପଦାର୍ଥ ବିଜ୍ଞାନରେ ରହିଥିବା ଜ୍ଞାନ ରାବିଙ୍କୁ ଖୁବ୍‌ ମୁଗ୍ଧ କରିଥିଲା । ତେଣୁ, ସେ ସାଂଗେ ସାଂଗେ କଲେଜର ଅଧ୍ୟକ୍ଷଙ୍କ ସହ ଯୋଗାଯୋଗ କଲେ । ସୁଇଙ୍ଗାରକୁ ଉପରଶ୍ରେଣୀରେ ନାମ ଲେଖାଇବା ନିମନ୍ତେ ଅନୁମତି ଦେବାକୁ ଅଧ୍ୟକ୍ଷଙ୍କୁ ଅନୁରୋଧ ଜଣାଇଲେ । ତାହାଛଡ଼ା, ପଦାର୍ଥବିଜ୍ଞାନରେ ତାକୁ ବୃତ୍ତି ଦେବା ପାଇଁ ମଧ୍ୟ ସୁପାରିଶ କଲେ ।

କିନ୍ତୁ, ରାବିଙ୍କ ଅନୁରୋଧର କିଛି ଲାଭ ହେଲାନାହିଁ । ବୃତ୍ତି ଦେବା ତ ଦୂରର କଥା । ଉପରଶ୍ରେଣୀକୁ ଉଠାଇବା ନିମନ୍ତେ ମଧ୍ୟ ଅଧ୍ୟକ୍ଷ ମନା କରିଦେଲେ ।

ରାବି କିନ୍ତୁ ଏଥିରେ ଦବିଗଲେ ନାହିଁ । ସୁଇଙ୍ଗାରକୁ ଉପରକ୍ଲାସ୍‌କୁ ଉତ୍ତୀର୍ଣ୍ଣ କରାଇବା ସପକ୍ଷରେ ସେ ଆରମ୍ଭ କରିଦେଲେ ଦସ୍ତଖତ ଅଭିଯାନ । ସୁଇଙ୍ଗାର ବତେଇଥିବା ପଦାର୍ଥ ବିଜ୍ଞାନ ସମସ୍ୟାର ସମାଧାନ ସୂତ୍ରକୁ ସେ ଖ୍ୟାତନାମା ପଦାର୍ଥ ବିଜ୍ଞାନୀମାନଙ୍କୁ ଦେଖେଇ ସେମାନଙ୍କର ସମର୍ଥନ ଲୋଡ଼ିଲେ । ଏପରିକି, ପରେ ପଦାର୍ଥ ବିଜ୍ଞାନରେ ନୋବେଲ୍‌ ପୁରସ୍କାର ପାଇଥିବା ହାନ୍‌ସ୍‌ ବେଥେ ମଧ୍ୟ ଏଥିରୁ ବାଦ୍‌ ପଡ଼ିଲେନି । ସମସ୍ତେ ୧୬ ବର୍ଷ ବୟସ୍କ ଛାତ୍ର ସୁଇଙ୍ଗାର ସପକ୍ଷରେ ଦୃଢ଼ ଦାବି ଜଣେଇବାରୁ ଅଧ୍ୟକ୍ଷ ବାଧ୍ୟ ହୋଇ ତାକୁ ସ୍ନାତକଶ୍ରେଣୀରେ ନାମ ଲେଖାଇବାକୁ ଅନୁମତି ଦେଲେ ।

ସୁଇଙ୍ଗାର ସ୍ନାତକ ଡିଗ୍ରୀ ଲାଭ କରିବା ପୂର୍ବରୁ ପି.ଏଚ୍‌.ଡ଼ି. ଉପାଧି ଲାଭ କରି ସାରିଥିଲେ ।

ସୁଇଙ୍ଗାର ଥିଲେ ଖୁବ୍‌ ମେଧାବୀ । କିନ୍ତୁ, ତାଙ୍କର ମେଧା ମୁଖ୍ୟତଃ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଅଧିକ ପ୍ରଦର୍ଶିତ ହୋଇଥିଲା । ଏ କ୍ଷେତ୍ରରେ ନିଜର ଉଚ୍ଚକୋଟୀର ଗବେଷଣା ପାଇଁ ୧୯୬୫ ମସିହାରେ ତାଙ୍କୁ ପଦାର୍ଥ ବିଜ୍ଞାନରେ ନୋବେଲ୍‌ ପୁରସ୍କାର ପ୍ରଦାନ କରାଯାଇଥିଲା । ନୋବେଲ୍‌ ପୁରସ୍କାର ଲାଭ କରିବା ବେଳକୁ ଜୁଲିଆନ୍‌ ସୁଇଙ୍ଗାରଙ୍କର ବୟସ ଥିଲା ଜମା ୪୭ ବର୍ଷ ।



# ଛଅବର୍ଷ ବୟସରେ ଆବିଷ୍କାର

ଆଫ୍ରିକାର ସବୁଠାରୁ ବଡ଼ ହ୍ରଦଟିର ନାଁ ହେଉଛି ଭିକ୍ଟୋରିଆ । ଏହି ହ୍ରଦର ଉତ୍ତର-ପୂର୍ବ ଉପକୂଳରେ ରହିଛି କେନିଆ ଦେଶର କାଞ୍ଜେରା ନାମକ ଜାଗା ।

୧୯୫୦ ମସିହାର କଥା । ଲୁଇ ଏବଂ ମେରୀ ଲିକି ସେଠାରେ ଭୂଇଁ ଖୋଳିବାରେ ଲାଗି ପଡ଼ିଥାନ୍ତି । ଭୂଇଁ ଖୋଳି ହଜାର ହଜାର ବର୍ଷ ତଳର ପଥର ପାଲଟି ଯାଇଥିବା ଜୀବମାନଙ୍କର ଅଂଶବିଶେଷକୁ ଖୋଜୁଥାଆନ୍ତି ସେମାନେ । ଏଭଳି ଅଂଶବିଶେଷକୁ କୁହାଯାଏ ଜୀବାଶ୍ମ । ଜୀବାଶ୍ମ ଆବିଷ୍କାର କରିବାରେ ଲୁଇ ଏବଂ ମେରୀ ପୃଥିବୀରେ ଖୁବ୍ ଜଣାଶୁଣା । ସେମାନେ ସର୍ବ ପ୍ରଥମେ ଆବିଷ୍କାର କରିଛନ୍ତି ଆଧୁନିକ ମଣିଷର ପୂର୍ବପୁରୁଷ 'ହୋମୋ ହାବିଲିସ୍'ର ଜୀବାଶ୍ମ । ଲୁଇ ଏବଂ ମେରୀ ହେଉଛନ୍ତି ସ୍ୱାମୀ ସ୍ତ୍ରୀ ।

ଲୁଇ ଏବଂ ମେରୀଙ୍କ ସାଥିରେ ଥାଏ ସେମାନଙ୍କର ପୁଅ ରିଚାର୍ଡ । ସେତେବେଳକୁ ରିଚାର୍ଡର ବୟସ ଜମା ଛଅବର୍ଷ । ବାପା ମା ଜୀବାଶ୍ମ ଖୋଜିବାରେ ବ୍ୟସ୍ତ । ରିଚାର୍ଡ ଏକା ଏକା ଅବା କରିବ କଅଣ ? ପାଖରେ ଥିବା ବଣବୁଦା ନିକଟକୁ ବି ଯାଇପାରୁ ନ ଥାଏ ସେ । କାରଣ, ବୁଦା ଉହାଡ଼ରୁ ସିଂହଟାଏ ବାହାରି ହୁଏତ ତାକୁ ଆକ୍ରମଣ କରିପାରେ । ତାହାଛଡ଼ା, ରହିଛି ବିଷଧର ସାପର ଭୟ ।

କ୍ରମେ ରିଚାର୍ଡର ଧୈର୍ଯ୍ୟ ଭାଙ୍ଗିଗଲା । ଖୁବ୍ ଗରମ ବି ଲାଗିଲା ତାକୁ । ହାଲିଆ ବି ଲାଗିଲା । ଆଖପାଖରେ ବଡ଼ ଗଛଟିଏ ଥିଲେ ଅବା ତା ଛାଇରେ ବସି ଥକା ମେଣ୍ଟେଇଥାନ୍ତା । ପ୍ରଚଣ୍ଡ ଖରାରୁ ନିଜକୁ ରକ୍ଷା କରିପାରିଥାନ୍ତା । ତା ସାଂଗକୁ ମାଛିମାନେ ଦେହରେ ବସି ତାକୁ ବଡ଼ କଲବଲ କଲେ ।

ତେଣୁ, ସେ ବାପ ମା'ଙ୍କ ପାଖରେ ଯାଇ ଅଭିଯୋଗ କଲା "ମୋତେ ଶୋଷ କଲାଣି, ମୋ ପେଟ କାମୁଡ଼ିଲାଣି । ମୋତେ ବଡ଼ ଗରମ ଲାଗୁଛି, ମୁଁ କରିବି କଅଣ ?" ଲୁଇ ଅତି ବିରକ୍ତ ହୋଇ କହି ପକେଇଲେ - "ଏଠୁ ଚାଲିଯାଇ ନିଜେ ନିଜେ ହାଡ଼ଟିଏ ଖୋଜି କରି ଆଣ୍ !"

ସେ ଭାବିଥିଲା ଯେ ବାପା-ମା ତାକୁ କୋଳେଇ ନେବେ । ଗେଲ କରିବେ । ଆଉଁଶି ଦେବେ । କିନ୍ତୁ, ଏପରି କିଛି ନ କରି ତାକୁ ହାଡ଼ ବା ଜୀବାଶ୍ମ ଖୋଜି ଆଣିବାକୁ

ପଠେଇଦେବାରୁ ତା ମନରେ ବଡ଼ ରାଗ ଆସିଲା । ସେ ଏହାକୁ ଏକ ଆହ୍ୱାନରୂପେ ଗ୍ରହଣ କରି ସେଠାରୁ ଚାଲିଗଲା । ଲୁଇ ଏବଂ ମେରୀ ମାଟି ଖୋଳି ଯେଉଁଠି ଜୀବାଶ୍ମ ଖୋଜୁଥିଲେ ତାରି ଆଖପାଖରେ ବୁଲିବାରେ ଲାଗିଲା ।

ବାପ ମା'ଙ୍କ ପାଖରୁ ଜମା ୩୦ ଫୁଟ ବାଟ ଯାଇଛି କି ନା ସେ ଦେଖିବାକୁ ପାଇଲା ବାଦାମୀ ରଙ୍ଗର ଛୋଟ ହାଡ଼ ଖଣ୍ଡେ । ସେଇଟିକୁ ଉଠେଇ ନେଲା ରିଚାର୍ଡ । ତାକୁ ଏପଟ ସେପଟ କରି ଦେଖିବାରେ ଲାଗିଲା । ତାହା ଯେ ଏକ ଜୀବାଶ୍ମ, ସେ ବିଷୟରେ ରିଚାର୍ଡର କୌଣସି ସନ୍ଦେହ ହେଲାନି । ସେଇଠି ଆଣ୍ଠୁମାଡ଼ି ବସିପଡ଼ିଲା ସେ ।

ତା ପାଖରେ ବି ଥାଏ ଜୀବାଶ୍ମରୁ ପଥର ଖଣ୍ଡ ଏବଂ ମାଟି ଛଡ଼େଇବାର କେଞ୍ଚା । ମଇଳାକୁ ଧୀରେ ଧୀରେ ସଫା କରିବାର ଛୋଟ ବ୍ରସ୍ । ଜୀବାଶ୍ମ ହାଡ଼ ଆମେ ଦେଖୁଥିବା ହାଡ଼ ଭଳି ନୁହେଁ । ହଜାର ହଜାର ବର୍ଷଧରି ମାଟିତଳେ ପଡ଼ି ରହିଥିବାରୁ ତା ଉପରେ ମାଟି ମାଡ଼ି ଯାଇଥାଏ । ତାର ଧଳାରଙ୍ଗ ବଦଳିଯାଇଥାଏ । ସେ ଦେଖାଯାଉଥାଏ ପାଉଁଶିଆ କିମ୍ବା ବାଦାମୀ ।

ଜୀବାଶ୍ମ ଖୋଜିବା ପୋତାଧନ ଖୋଜିବା ସାଂଗେ ସମାନ । ଧନ ସଂପଦଠାରୁ ଆହୁରି ମୂଲ୍ୟବାନ ହେଉଛି ଜୀବାଶ୍ମ । ଜୀବାଶ୍ମ ଖୋଜୁ ଖୋଜୁ କେତେବେଳେ ମଣିଷ ଦେଖି ନ ଥିବା ବିରାଟ ବିରାଟ ହରିଣ ଶିଙ୍ଗ ମିଳିଯାଏ ତ ମିଳିଯାଏ ଜିରାଫ୍‌ର ଅଦ୍ଭୁତ ଶିଙ୍ଗ । ହାତୀଦାନ୍ତ ଭଳି ବଡ଼ ବଡ଼ ଦାନ୍ତଥିବା ବିରାଡ଼ିର କଙ୍କାଳ ମଧ୍ୟ ମିଳିଯାଇପାରେ । ଏଭଳି ବିରାଡ଼ି ପାଖାପାଖି ୧୨୦ ଲକ୍ଷ ବର୍ଷ ତଳେ ବାସ କରୁଥିଲେ ଆଫ୍ରିକାରେ । ସେତେବେଳକୁ ସେଠାରେ ମଣିଷର ଆବିର୍ଭାବ ବି ହୋଇନଥିଲା ।

ଜୀବାଶ୍ମଟିକୁ ପାଇ ଖୁସିରେ କୁରୁଳି ଉଠିଲା ରିଚାର୍ଡ । ମୁହଁରେ ମାଛି ବେଢ଼ିଲେ ବି ସେ ଜାଣି ପାରିଲାନି । ଧୀରେ ଧୀରେ, ଅତି ସାବଧାନରେ ସେ ତାକୁ ପରିଷ୍କାର କରିଚାଲିଲା । ସଫା କରିଦେଲା ପରେ ଦେଖାଗଲା ବାଦାମୀରଂଗର ହାଡ଼ । ହଠାତ୍ ସେ ପାଇଲା ଦାନ୍ତଟିଏ । ମିଳିଗଲା ଆହୁରି ଗୋଟିଏ ଦାନ୍ତ । ହଜାର ହଜାର ବର୍ଷ ଧରି ମାଟିତଳେ ପୋତି ହୋଇ ରହିଥିବା ଏହି ଜନ୍ତୁଟି ତେବେ କଅଣ ?

ପୁଅ ଏତେବେଳଯାଏ କୁଆଡ଼େ ଗଲା ବୋଲି ଚାରିଆଡ଼କୁ ଆଖି ପକେଇଲେ ଲୁଇ ଆଉ ମେରୀ । ରିଚାର୍ଡ ଦୂରରେ ବସି କଅଣ କରୁଛି ଦେଖିବା ନିମନ୍ତେ ଖୁବ୍ କୌତୁହଳରେ ତା ପାଖକୁ ଆଗେଇଚାଲେ ଲୁଇ । ପୁଅ ହାତରୁ ନେଇ ପରୀକ୍ଷା କଲେ ଜୀବାଶ୍ମଟିକୁ । ପ୍ରକୃତରେ ତାହା ଥିଲା ଏକ ବିଶାଳ ଘୁଷୁରିର ପାଟିହାଡ଼ । ସେହି ଜାତିର

ଘୁଷୁରି ବହୁଦିନ ଆଗରୁ ଲୋପ ପାଇଯାଇଥିଲେ । ସେମାନଙ୍କ ଜୀବାଶ୍ମକୁ ଦେଖି ସେମାନଙ୍କ ବିଷୟରେ ବୈଜ୍ଞାନିକମାନେ ଯାହା କଳନା କରିପାରୁଛନ୍ତି ।

ଅତି ଆନନ୍ଦରେ ଆତ୍ମହରା ହୋଇ ଉଠିଲେ ଲୁଇ । ଡ଼ାକ ପକେଇଲେ ମେରୀଙ୍କୁ । ମେରୀ ମଧ୍ୟ ଜୀବାଶ୍ମଟିକୁ ପରୀକ୍ଷା କରି ଖୁବ୍ ଖୁସି ହୋଇଗଲେ । ପୁଅର ଏହି ଆବିଷ୍କାର ପାଇଁ ବାପା ମା'ଙ୍କ ଆନନ୍ଦର ସୀମା ରହିଲାନି । ସେମାନେ ରିଚାର୍ଡ଼ଙ୍କୁ ଆଲିଙ୍ଗନ କରି ତା କପାଳରେ ଲଦି ଦେଇଗଲେ କେତେ ନା କେତେ ଚୁମା ।

ମାତ୍ର ଛଅ ବର୍ଷ ବୟସରେ ଜୀବାଶ୍ମ ଆବିଷ୍କାର ! ଏହା ବାସ୍ତବରେ ଥିଲା ଏକ ଆଶ୍ଚର୍ଯ୍ୟ ଘଟଣା । ରିଚାର୍ଡ ଦ୍ୱାରା ଆବିଷ୍କାର କରାଯାଇଥିଲା ସେହି ଜୀବାଶ୍ମଟି ନାଇରୋବିଠାରେ ଥିବା କେନିଆ ଜାତୀୟ ସଂଗ୍ରହାଳୟରେ ସାଇତା ହୋଇ ରହିଛି । ତୁମେ ବି ଏବେ ଗଲେ ତାକୁ ଦେଖିପାରିବ ।

ରିଚାର୍ଡଙ୍କ ପୂରା ନାଁ ରିଚାର୍ଡ ଲିକି । ତାଙ୍କ ସ୍ତ୍ରୀଙ୍କର ନାମ ମିଭ୍‌ଲିକି । ପିତା ଲୁଇ ଏବଂ ମାତା ମେରୀ ଲିକିଙ୍କ ଭଳି ରିଚାର୍ଡ ଏବଂ ମିଭଲିକି ମଧ୍ୟ ଜୀବାଶ୍ମ-ବୈଜ୍ଞାନିକ ଭାବରେ ପୃଥିବୀରେ ଖୁବ୍ ନାଁ କରିଛନ୍ତି । ୨୦ ଲକ୍ଷ ବର୍ଷ ତଳର ଆଦିମାନବର ଖପୁରି ଆବିଷ୍କାର କରିବାର ଗୌରବ ଅର୍ଜନ କରିଛନ୍ତି ରିଚାର୍ଡ । ସେମାନେ ରହୁଛନ୍ତି କେନିଆରେ ।



# ସୁଯୋଗ୍ୟ ସନ୍ତାନ ମେଣ୍ଡେଲିୟେଭ୍

ମେଣ୍ଡେଲିୟେଭ୍ ଥିଲେ ଜଣେ ରସାୟନ ବିଜ୍ଞାନୀ । ରୁଷିଆର ଏହି ବୈଜ୍ଞାନିକଙ୍କ ପୂରା ନାଁ ଦିମିତ୍ରି ଇଭାନୋଭିଚ୍ ମେଣ୍ଡେଲିୟେଭ୍ । ମୌଳିକ ପଦାର୍ଥ ଗୁଡ଼ିକର ପର୍ଯ୍ୟାୟ ସାରଣୀ ବା ପିରିୟଡିକ୍ ଟେବୁଲ୍ ସଂପର୍କରେ ଧାରଣା ଦେଇ ସେ ଖ୍ୟାତି ଅର୍ଜନ କରିଛନ୍ତି । ଏହି ବୈଜ୍ଞାନିକଙ୍କର ପର୍ଯ୍ୟାୟସାରଣୀ ସଂପର୍କିତ ଆବିଷ୍କାର ପଛରେ ରହିଛି ଏକ ବିସ୍ମୟକର ଘଟଣା ।

ମୌଳିକ ପଦାର୍ଥ ଗୁଡ଼ିକ ସମ୍ବନ୍ଧରେ ପୁସ୍ତକଟିଏ ରଚନା କରିବା ନିମନ୍ତେ ବହୁ କାଳୁ ଚିନ୍ତା କରି ଆସୁଥିଲେ ମେଣ୍ଡେଲିୟେଭ୍ । କିନ୍ତୁ, ସେଗୁଡ଼ିକୁ କେଉଁ କ୍ରମରେ ରଖି ରଚନା କରିବେ, ସେ ବିଷୟରେ ତାଙ୍କୁ କୌଣସି ବାଟ ମିଳୁ ନ ଥିଲା । ଦିନକର କଥା । ମଧ୍ୟାହ୍ନ ଭୋଜନ ସାରି ଟିକିଏ ଢୁଳେଇ ପଡ଼ିଥାନ୍ତି ସେ । ଛାଇଛାଇଆ ନିଦରେ ସେ ଦେଖିଲେ ଏକ ସ୍ୱପ୍ନ । ସେହି ସ୍ୱପ୍ନରେ ପର୍ଯ୍ୟାୟସାରଣୀରେ ବିଭିନ୍ନ ମୌଳିକ ପଦାର୍ଥର ସ୍ଥାନ ବିଷୟରେ ସଂପୂର୍ଣ୍ଣ ସୂଚନା ମିଳିଗଲା ତାଙ୍କୁ । ତେଣୁ, ସ୍ୱପ୍ନଟି ହିଁ ତାଙ୍କୁ ବାଟ ବତେଇ ଦେଇଥିଲା ପର୍ଯ୍ୟାୟ ସାରଣୀର ଆବିଷ୍କାର ପାଇଁ ।

ମେଣ୍ଡେଲିୟେଭ୍‌ଙ୍କ ପ୍ରଥମ ସ୍ତ୍ରୀଙ୍କ ନାଁ ଫିଓଦା ନିକିତିଚ୍‌ନା । ସେ କିନ୍ତୁ ନିକିତିଚ୍‌ନାଙ୍କୁ ଛାଡ଼ପତ୍ର ଦେଇ ଅଲଗା ରହୁଥିଲେ । ପରେ ସେ ବିବାହ କଲେ ଆନ୍ନା ଇଭାନୋଭନା ପୋପୋଭ୍ ନାମକ ଜଣେ ଚିତ୍ରଶିଳ୍ପୀଙ୍କୁ । ଏହି ବିବାହରେ ଆନ୍ନାଙ୍କ ବାପମା'ବି ରାଜି ନ ଥିଲେ । କାରଣ, ସେତେବେଳେ ଚର୍ଚ୍ଚର ନିୟମ ଥିଲା ଯେ ଛାଡ଼ପତ୍ର ଦେବାର ସାତବର୍ଷ ଭିତରେ କେହି ଦ୍ୱିତୀୟ ବିବାହ କରିପାରିବେନି । କିନ୍ତୁ, ମେଣ୍ଡେଲିୟେଭ୍ ଧରାଧରି କରି ଜଣେ ପାଦ୍ରୀଙ୍କୁ ରାଜି କରେଇନେଲେ । ପାଦ୍ରୀଜଣଙ୍କ ସାହାଯ୍ୟରେ ବିବାହ କାମ ହୋଇଗଲା ।

ସେହି ସମୟରେ ଅନ୍ୟ ଜଣେ ଉଚ୍ଚ ପଦବୀର ବ୍ୟକ୍ତି ମଧ୍ୟ ଦ୍ୱିତୀୟ ବିବାହ କରିବାକୁ ଚାହିଁଲେ । ତାଙ୍କୁ କିନ୍ତୁ ଏଥିପାଇଁ ଅନୁମତି ମିଳିଲାନି । ତେଣୁ, ସେ ରାଗିଯାଇ ରୁଷିଆର ସମ୍ରାଟ ଜାର୍‌ଙ୍କ ନିକଟରେ ଫେରାଦ ହେଲେ । ସେ ଯୁକ୍ତି କଲେ ଯେ ଦ୍ୱିତୀୟ ବିବାହ ପାଇଁ ମେଣ୍ଡେଲିୟେଭ୍‌ଙ୍କୁ ଅନୁମତି ଦିଆ ଯାଇଥିବାରୁ, ସେ ମଧ୍ୟ ଆଉ ଥରେ

ବିବାହ କରିବାକୁ ହକଦାର । ମେଣ୍ଡେଲିୟେଭ୍‌ଙ୍କର ଯଦି ଦୁଇଟି ପତ୍ନୀ ରହିପାରିବେ, ତେବେ ତାଙ୍କର କାହିଁକି ଦୁଇଟି ପତ୍ନୀ ରହିପାରିବେନି ?

ସେହି ବ୍ୟକ୍ତିଙ୍କର ଅଭିଯୋଗ ଶୁଣି ଜାର୍ କିଛି ସମୟ ନୀରବରେ ବସି ରହିଲେ । ତା ପରେ କହିଲେ, ‘‘ମେଣ୍ଡେଲିୟେଭ୍‌ଙ୍କର ଦୁଇଟି ସ୍ତ୍ରୀ ଅଛନ୍ତି ? ଏଥିରେ ଅସୁବିଧା କଅଣ ? ମେଣ୍ଡେଲିୟେଭ୍ ଯାହା କରିଛନ୍ତି, ତାହା ଠିକ୍ । କାରଣ ମୋ ରାଜ୍ୟରେ ରହିଛନ୍ତି ଜଣେ, କେବଳ ଜଣେ ହିଁ ମେଣ୍ଡେଲିୟେଭ୍ ! ତାଙ୍କ ସମକକ୍ଷ ହେବାଭଳି ଆଉ ଜଣେ ବ୍ୟକ୍ତିଙ୍କୁ ଖୋଜି ବାହାର କରତ, ଦେଖିବା !’’ ବାସ୍, ସେତକିରେ ଫେରାଦ ହୋଇଥିବା ବ୍ୟକ୍ତି ଚୁପ୍ ହୋଇଗଲେ ।

ମେଣ୍ଡେଲିୟେଭ୍ ତାଙ୍କ ମା’ଙ୍କୁ ଖୁବ୍ ଭଲ ପାଉଥିଲେ । କାରଣ, ତାଙ୍କୁ ପାଠ ପଢ଼େଇ ମଣିଷ କରିବାରେ ବହୁତ କଷ୍ଟ ସହିଥିଲେ ତାଙ୍କର ମାଆ । ମେଣ୍ଡେଲିୟେଭ୍ ରଚନା କରିଥିଲେ ଏକ ପୁସ୍ତକ । ପୁସ୍ତକଟିର ନାଁ ରଖିଥିଲେ ‘ସଲ୍ୟୁସନ୍‌ସ୍’ (ସମାଧାନ) । ଏହା ପ୍ରକାଶିତ ହୋଇଥିଲା ୧୮୮୭ ମସିହାରେ । ପୁସ୍ତକଟିକୁ ସେ ଉତ୍ସର୍ଗ କରିଥିଲେ ମାଆଙ୍କୁ । ଉତ୍ସର୍ଗ ପୃଷ୍ଠାରେ ମେଣ୍ଡେଲିୟେଭ୍ ଲେଖିଥିଲେ -

‘‘ଜଣେ ମାଆଙ୍କର ସ୍ମୃତିରେ ତାଙ୍କ କନିଷ୍ଠ ସନ୍ତାନ ଦ୍ୱାରା ଏହା ଉତ୍ସର୍ଗୀକୃତ । ମାଆ ଜଣକ ସେହି ସନ୍ତାନଟିକୁ ଉଦାହରଣ ଛଳରେ ପରାମର୍ଶମାନ ଦେଉଥିଲେ । ତାର ଭୁଲ୍‌ଭଟକାଗୁଡ଼ିକୁ ବଡ଼ ସ୍ନେହରେ ସଂଶୋଧନ କରିଦେଉଥିଲେ । ସନ୍ତାନଟିକୁ ବିଜ୍ଞାନ ଶାଖାପ୍ରତି ଆକର୍ଷିତ କରାଇବା ନିମନ୍ତେ ତାକୁ ଧରି ସେ ସାଇବେରିଆ ପରିତ୍ୟାଗ କରିଥିଲେ । ନିଜର ସମସ୍ତ ସମୟ ଏବଂ ଶକ୍ତି ସେ ବିନିଯୋଗ କରିଦେଇଥିଲେ ସନ୍ତାନର ସ୍ୱାର୍ଥପାଇଁ ।’’

ମେଣ୍ଡେଲ୍‌ୟେଭ୍‌ଙ୍କ ମା’ ମଧ୍ୟ ଥିଲେ ଜଣେ ମହୀୟସୀ ମହିଳା । ମୃତ୍ୟୁବରଣ କରିବାର ଅଳ୍ପ ସମୟ ପୂର୍ବରୁ ସେ ମେଣ୍ଡେଲିୟେଭ୍‌ଙ୍କୁ କହିଥିଲେ, ‘‘ବାବୁରେ, ଚାକଚକ୍ୟରେ ଭଳିଯିବୁନି । ବେଶୀ କାମ କରିବୁ, କିନ୍ତୁ କମ୍ କଥା କହିବୁ । ସାରା ଜୀବନଟା କଟେଇଦେବୁ ଖୋଜାଖୋଜିରେ । ଭଗବାନଙ୍କୁ ଖୋଜିବାରେ ଧୈର୍ଯ୍ୟ ହରେଇବୁନି କି ଧୈର୍ଯ୍ୟହରା ହେବୁନି ବୈଜ୍ଞାନିକ ସତ୍ୟକୁ ଖୋଜିବାରେ ।’’

ମାଆଙ୍କର ଏହି ପରାମର୍ଶକୁ ସାରା ଜୀବନ ପାଳି ଆସିଥିଲେ ମେଣ୍ଡେଲିୟେଭ୍ । ସେ କହୁଥିଲେ, ‘‘ମାଆଙ୍କ ଉପଦେଶବାଣୀ ମୋ ପାଇଁ ଅତି ପବିତ୍ର ।’’

୭୩ ବର୍ଷ ବୟସରେ ମେଣ୍ଡେଲିୟେଭ୍ ପ୍ରାଣତ୍ୟାଗ କରିଥିଲେ ।



# ବୈଜ୍ଞାନିକଙ୍କ ପାଗଳାମୀ

ତାଙ୍କ ନାଁ ଆଲାମ୍ ଟ୍ୟୁରିଙ୍ଗ୍ । ସେ ଥିଲେ ଜଣେ ଅଦ୍ଭୁତ ବୈଜ୍ଞାନିକ । ନିଜ ଚେହେରା ଆଡ଼କୁ ତାଙ୍କର ଜମା ନଜର ନ ଥିଲା । ସେ ହାତ ଆଉ ଗୋଡ଼ର ନଖ ନିୟମିତ ଭାବରେ କାଟୁ ନ ଥିଲେ । ତେଣୁ, ଆଙ୍ଗୁଠିରେ ସବୁବେଳେ ବଡ଼ ବଡ଼ ନଖମାନ ଦେଖିବାକୁ ମିଳୁଥିଲା । କେଉଁଦିନ ଇଚ୍ଛା ହେଲେ ଦାନ୍ତ ଘଷୁଥିଲେ, ଇଚ୍ଛା ନ ହେଲେ ନାହିଁ । ତେଣୁ, ତାଙ୍କ ଦାନ୍ତଗୁଡ଼ିକ ପଡ଼ିଯାଇଥିଲା ହଳଦିଆ । ପିନ୍ଧା ପୋଷାକ ପତ୍ର କଥା ନ କହିବା ବରଂ ଭଲ । ସେଗୁଡ଼ିକ ଥିଲା ମଇଳା ଆଉ କୋଚଟ । ଜାମାପ୍ୟାଣ୍ଟର ଏଣେ ତେଣେ ଲାଗି ରହିଥିଲା କାଳିଦାଗ । ବେଲ୍ଟ୍ ନ ମିଳିଲେ ଟାଇଟିଏ ନେଇ ତାକୁ ପ୍ୟାଣ୍ଟ ଉପରେ ଭିଡ଼ି ବେଲ୍ଟ କାମ ଚଳେଇ ନେଉଥିଲେ ଟୁରିଙ୍ଗ୍ । ଏହି କାରଣରୁ ତାଙ୍କୁ ଯେତେବେଳେ ଦେଖିଲେ ବି ଜଣାପଡୁଥିଲା, ସତେ ଯେମିତି ସେ ସେହିକ୍ଷଣି ଶୋଇବା ବିଛଣାଛାଡ଼ି ଉଠି ଆସିଛନ୍ତି !

ଟୁରିଙ୍ଗଙ୍କର ହସ୍ତାକ୍ଷର ଥିଲା ଅତି କଦର୍ଯ୍ୟ । ବଡ଼ ଫୁଲାଫାଙ୍କିଆ ଥିଲେ ସେ । ବୁଦ୍ଧିରେ ତାଙ୍କ ସମକକ୍ଷ ହୋଇଥିବା ଲୋକମାନଙ୍କ ସହ କେବଳ ସେ ସଂପର୍କ ରଖିଥିଲେ । ସେଇମାନଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ଯାହାକୁ କମ୍‌ବୁଦ୍ଧିଆ ବୋଲି ଭାବୁଥିଲେ, ତାକୁ ସେ ଆଡ଼ ଆଖିରେ ବି ଅନାଉ ନ ଥିଲେ ।

କିନ୍ତୁ, ଦୌଡ଼ିବାରେ ସେ ଆନନ୍ଦ ପାଉଥିଲେ । ସାଇକଲ୍ ଚଳେଇବାରେ ତାଙ୍କୁ ଏପରି ମଜା ଲାଗୁଥିଲା ଯେ ଚାରିଆଡ଼େ ସାଇକେଲ୍‌ରେ ଯିବାଆସିବା କରୁଥିଲେ ସେ । ପ୍ରତିଦିନ ଚାରି କିଲୋମିଟର ବାଟ ଚାଲିକରି ଯାଉଥିଲେ କିମ୍ବା ସାଇକଲ୍ ଚଳେଇ ଯାଉଥିଲେ । କୁସ୍ତିକସରତ ମଧ୍ୟ ଥିଲା ତାଙ୍କର ପ୍ରତିଦିନର ଅଭ୍ୟାସ ।

ତାଙ୍କର ଏହିପରି ଧାରଣା ଦେଖି ଲୋକେ ତାଙ୍କୁ 'ପାଗଳା' ବୋଲି ଧରି ନେଇଥିଲେ । ସେ'ବି ବହୁ ସମୟରେ 'ପାଗଳା' କାମ ସବୁ କରୁଥିଲେ ! କିନ୍ତୁ, ତାଙ୍କର ପାଗଳାମି ପଛରେ ରହିଥିଲା କିଛି ନା କିଛି ବୈଜ୍ଞାନିକ ପଦ୍ଧତି । ଏପରିକି ପିଲାବେଳୁ ବୈଜ୍ଞାନିକ ଧାରାରେ ଚିନ୍ତା କରିବାରେ ତାଙ୍କଠାରେ ଆଗ୍ରହ ସୃଷ୍ଟି ହୋଇଥିଲା ।

ତାଙ୍କଠାରେ ଥରେ ଧାରଣା ଆସିଲା ଯେ ଭଙ୍ଗା କଣ୍ଢେଇର ଖଣ୍ଡଗୁଡ଼ିକୁ ମାଟିରେ ପୋତି ପକେଇଲେ କିଛି ଦିନ ପରେ ସେଥିରୁ ଚାରା ବାହାରିବ । ସେହି ଚାରା ବଢ଼ି ବଢ଼ି ବଡ଼ ଗଛ ହୋଇଯିବ ଏବଂ ସେଥିରେ 'କଣ୍ଢେଇ ଫଳ' ଧରିବ । ଏହି ବିଶ୍ୱାସ ନେଇ ସେ ଭଙ୍ଗା କଣ୍ଢେଇ ପୋତି ଚାଲିଲେ ସିନା, ହେଲେ ସେଥିରୁ ଅବା ଚାରା ବାହାରନ୍ତା କିପରି ? ଆଉ ଥରେ ହାତରେ ଚୁମ୍ବକଟିଏ ଧରି ସେ ନାଳନର୍ଦ୍ଦମା ଉପରେ ହଲେଇ ଚାଲିଲେ । ସେ ଭାବି ନେଇଥିଲେ ଯେ ନାଳନର୍ଦ୍ଦମାରେ ପଡ଼ିଛି କେତେ ନା କେତେ ଛୋଟ ବଡ଼ ଲୁହା ଖଣ୍ଡ । ନର୍ଦ୍ଦମାପାଣି ଉପରେ ଚୁମ୍ବକ ଧରି ରଖିଲେ ଲୁହାଖଣ୍ଡମାନ ଚୁମ୍ବକ ଆଡ଼କୁ ଟାଣି ହୋଇ ଆସିବ ଏବଂ ଏହି ଉପାୟରେ ସଂଗ୍ରହ କରିହେବ ଲୁହାଖଣ୍ଡଗୁଡ଼ିକୁ ।

ଦିନେ ଦିନେ ସେ ରାସ୍ତାକୁ ବାହାରି ପଡୁଥିଲେ । ରାସ୍ତାରେ ଠିଆ ହୋଇଥିବା ବିଜୁଳି ଖୁଣ୍ଟଗୁଡ଼ିକ ପାଖକୁ ଯାଇ ସେଗୁଡ଼ିକରେ ଲେଖା ହୋଇଥିବା ଖୁଣ୍ଟର ନମ୍ବରକୁ ଟିପି ପକାଉଥିଲେ !

କିନ୍ତୁ ଟୁରିଙ୍ଗ୍ ଖୁବ୍ ବୁଦ୍ଧିଆ ବୋଲି ତାଙ୍କ ପିତାମାତାଙ୍କର ଦୃଢ଼ ବିଶ୍ୱାସ ଥିଲା । ବିଶେଷକରି ଗୋଟିଏ ଘଟଣାରୁ ସେମାନେ ଏହାର ପ୍ରମାଣ ପାଇଥିଲେ । ଥରେ ମହୁମାଛି ମାନଙ୍କର ଗତିପଥ ଏବଂ ସେମାନଙ୍କର ନାଚକୁ ଖୁବ୍ ଗଭୀର ଭାବରେ ନୀରିକ୍ଷଣ କରିଚାଲିଲେ ଟୁରିଙ୍ଗ୍ । ତା ପରେ, କାଗଜରେ ଗାର ଟଣା ଟଣି କରି ସେଥିରୁ ନିର୍ଣ୍ଣୟ କରିନେଲେ ମହୁବସା ରହିଥିବା ସ୍ଥାନଟିକୁ । ଟୁରିଙ୍ଗଙ୍କର ଏହି ମହୁବସା ସନ୍ଧାନ ଥିଲା ନିର୍ଭୁଲ୍ । ଏହି ଘଟଣାରୁ ଟୁରିଙ୍ଗଙ୍କ ମେଧା ସଂପର୍କରେ ପିତାମାତାଙ୍କ ମନରେ କୌଣସି ସନ୍ଦେହ ରହିଲା ନାହିଁ । ଉକ୍ତ ପରୀକ୍ଷାରେ ସଫଳ ହେବା ବେଳକୁ ଟୁରିଙ୍ଗଙ୍କୁ ହୋଇଥିଲା ଜମା ଆଠବର୍ଷ ବୟସ ।

ଟୁରିଙ୍ଗଙ୍କୁ ଯେତେବେଳେ ମାତ୍ର ଏଗାର ବର୍ଷ, ସେତିକିବେଳେ ତାଙ୍କ ହାତରେ ପଡ଼ିଲା ବହିଟିଏ । ବହିଟିର ନାଁ ଥିଲା "ପ୍ରତ୍ୟେକ ପିଲାଙ୍କ ଜାଣିବା ଉପଯୋଗୀ ପ୍ରାକୃତିକ ବିସ୍ମୟ" । ବହିଟି ମୂଳରୁ ଶେଷଯାଏ ପଢ଼ି ପକେଇଲେ ସେ । ଏପରିକି ଦୁଇଚାରିଥର ପଢ଼ି ନେଲେ ତାକୁ । ବହିଟିକୁ ପଢ଼ିସାରିଲା ପରେ ବିଜ୍ଞାନ ଆଡ଼କୁ ତାଙ୍କର ଆଖି ଡ଼ଳିଗଲା । ସେ ବିଜ୍ଞାନର ପ୍ରେମରେ ପଡ଼ିଗଲେ ।

ବିଜ୍ଞାନରେ ରୁଚି ରଖିବା ସଂଗେ ସଂଗେ ଗଣିତ ପ୍ରତି ତାଙ୍କର ଆକର୍ଷଣ ଥିଲା ସବୁଠାରୁ ବେଶୀ । ପାଠପଢ଼ିବାବେଳେ ଗଣିତ ବିଷୟରେ ସର୍ବାଧିକ ନମ୍ବର ରଖୁଥିଲେ

ଟୁରିଙ୍ଗ । ଗଣିତର ଉପଯୋଗିତା ଉପରେ ଗଭୀର ଆସ୍ଥାଥିଲା ତାଙ୍କର । ସେ ବିଶ୍ୱାସ କରୁଥିଲେ ଯେ ବିଜ୍ଞାନର ସମସ୍ୟାଗୁଡ଼ିକୁ ଗାଣିତିକ ଉପାୟରେ ହିଁ ସମାଧାନ କରିହେବ ।

ତାଙ୍କର ଉଚ୍ଚ ଗଣିତ ଜ୍ଞାନ ଦେଖି ଥରେ ତାଙ୍କର ଜଣେ ସହପାଠୀ ଦାବି କଲେ ଯେ ପୂର୍ବ ଜନ୍ମରେ ମଧ୍ୟ ଟୁରିଙ୍ଗ୍ ଥିଲେ ଜଣେ ଗଣିତ ବିଶାରଦ । ଏହା ଶୁଣି ଟୁରିଙ୍ଗ୍ ଉତ୍ତର ଦେଇଥିଲେ, ''ତୁମର ଏହି ମତକୁ ଗାଣିତିକ ଉପାୟରେ ପ୍ରମାଣ କରିପାରିଲେ ହିଁ ମୁଁ ତାକୁ ଗ୍ରହଣ କରିପାରିବି ।''

ଆଲାନ୍ ଟୁରିଙ୍ଗ୍ ବଞ୍ଚିଥିଲେ ମାତ୍ର ୪୪ ବର୍ଷ । କିନ୍ତୁ, ଏହି ଅଳ୍ପ ଜୀବନ କାଳ ମଧ୍ୟରେ ସେ ନିଜକୁ ଜଣେ ଉଚ୍ଚକୋଟୀର ଗଣିତଜ୍ଞ ରୂପେ ପ୍ରତିଷ୍ଠିତ କରି ପାରିଥିଲେ । ସେ ଥିଲେ ବ୍ରିଟେନ୍‌ର ସେ ସମୟର ସର୍ବଶ୍ରେଷ୍ଠ କମ୍ପ୍ୟୁଟର ବିଶେଷଜ୍ଞ ।



# ଖିଆଲୀ ହାଲ୍‌ଡେ଼ନ୍

ଭାରି ବଡ଼ ନାଁଟିଏ ତାଙ୍କର । କିନ୍ତୁ, 'ଜେ.ବି.ଏସ୍.' କି 'ହାଲ୍‌ଡେ଼ନ୍' ବୋଲି କହିଲେ ତାଙ୍କୁ ହିଁ ଲୋକେ ବୁଝନ୍ତି । ଜେ.ବି.ଏସ୍. ହାଲ୍‌ଡେ଼ନ୍ ନାମଟା ବି ସଂକ୍ଷିପ୍ତ । ସେ ଜନ୍ମ ହୋଇଥିଲେ ଲଣ୍ଡନ୍‌ରେ, ୧୮୯୨ ମସିହାରେ । ମୃତ୍ୟୁବରଣ କଲେ ୧୯୬୪ ମସିହାରେ, ଭାରତରେ । ଜନ୍ମ ହୋଇଥିଲେ ଇଂଲଣ୍ଡର ନାଗରିକ ରୂପେ, ପ୍ରାଣତ୍ୟାଗ କଲେ ଭାରତର ନାଗରିକ ହୋଇ ।

ମରିବା ପୂର୍ବରୁ ସେ ଲେଖିଯାଇଥିଲେ, "ମୁଁ ଜଣେ ଅବାଗିଆ ମଣିଷ । ମୋର ସ୍ୱଭାବ ବଡ଼ ଅସ୍ଥିର । ତଥାପି ମୁଁ ଏଥିପାଇଁ ଲାଜ କରେନି । କିନ୍ତୁ, ମୁଁ ବେଳେ ବେଳେ ଭାବେ ଯେ ଆଜିଠାରୁ ଶହେ ବର୍ଷପରେ କଅଣ ପାଇଁ ଲୋକେ ମୋତେ ମନେ ପକେଇବେ ?"

ହାଲ୍‌ଡେ଼ନ୍ ଜଣେ ବୈଜ୍ଞାନିକ । ହେଲେ, କେଉଁ ବିଭାଗର ବୈଜ୍ଞାନିକ ସେ ? ଜୀବବିଜ୍ଞାନ, ଗଣିତ, ଚିକିତ୍ସା ବିଜ୍ଞାନ ଇତ୍ୟାଦି ବିଜ୍ଞାନର ନାନା ଶାଖାରେ ଗବେଷଣା କରି ଖ୍ୟାତି ଅର୍ଜନ କରିଥିଲେ ସେ । ବିଜ୍ଞାନକୁ ଲୋକମାନଙ୍କ ପାଖରେ ପହଞ୍ଚେଇବା ନିମନ୍ତେ ମଧ ସେ ବହୁକାମ କରିଯାଇଛନ୍ତି । ଏପରିକି, ଶିଶୁ ମନଲାଖି ଗପ ବହି ମଧ ଲେଖିଯାଇଛନ୍ତି ହାଲ୍‌ଡେନ୍ ।

ବୈଜ୍ଞାନିକ ଧାରଣା ଏବଂ ତତ୍ତ୍ୱଇତ୍ୟାଦିକୁ ପ୍ରଥମେ ନିଜ ଉପରେ ପରୀକ୍ଷା କରିନେବା ଥିଲା ତାଙ୍କର ଅଭ୍ୟାସ । ଉଦାହରଣ ସ୍ୱରୂପ, ହାଇଡ୍ରୋକ୍ଲୋରିକ୍ ଏସିଡ୍ ବା ଲବଣାମ୍ଳ, ଅତି ଲୁଣିଆ ପାଣି, କ୍ୟାଲ୍‌ସିଅମ୍ କ୍ଲୋରାଇଡ୍ ଦ୍ରବଣ ଇତ୍ୟାଦିକୁ ନିଜେ ପିଇ ତାର ପ୍ରଭାବ ଲେଖିପକେଇଥିଲେ ସେ । କାର୍ବନ୍ ମୋନୋକ୍‌ସାଇଡ୍ ଏବଂ କାର୍ବନ୍ ଡ଼ାଇ ଅକ୍‌ସାଇଡ୍ ଗ୍ୟାସ୍ ହେଉଛି ଖୁବ୍ ବିଷାକ୍ତ । କିନ୍ତୁ, ଶରୀର ଉପରେ ତାହା କେଉଁ ଧରଣର କ୍ଷତିକାରୀ ପ୍ରଭାବ ପକାଇଥାଏ ଜାଣିବା ନିମନ୍ତେ ହାଲ୍‌ଡେ଼ନ୍ ବନ୍ଦ କୋଠରୀ ଭିତରେ ବସି ସେହି ଗ୍ୟାସ୍‌କୁ ଶୁଙ୍ଘି ଚାଲିଥିଲେ ।

ନିଜ ଉପରେ ପରୀକ୍ଷା କରିବାର ଧାରାକୁ ହାଲ୍‌ଡେ଼ନ୍ ଶିଖିଥିଲେ ତାଙ୍କ ପିତାଙ୍କଠାରୁ । ତାଙ୍କ ପିତାଙ୍କ ନାମ ଜନ୍ ସ୍କଟ୍ ହାଲ୍‌ଡେ଼ନ୍ । ଜନ୍ ସ୍କଟ୍ ଥିଲେ ଜଣେ ଜଣାଶୁଣା ଶରୀର

ବିଜ୍ଞାନୀ । ନିଜର ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା କରିବାରେ ସେ ହାଲ୍‌ଡେନ୍‌ଙ୍କୁ ମଧ ବ୍ୟବହାର କରୁଥିଲେ । ପୁତ୍ର ହାଲ୍‌ଡେନ୍‌ଙ୍କ ଉପରେ କରୁଥିଲେ ପରୀକ୍ଷା । ଅତି ଗହୀରିଆ ଖଣି ଏବଂ ଭୂଇଁତଳର ପରିବେଶରେ ଶରୀର ଉପରେ କି କି ପ୍ରକାରର କ୍ଷତିକାରୀ ପ୍ରଭାବ ପଡ଼ିଥାଏ । ତାହା ଜାଣିବା ନିମନ୍ତେ ଖଣି ଭିତରେ ଏବଂ ଭୂଇଁ ତଳେ ସେ ଅଳ୍ପ ବୟସ୍କ ହାଲ୍‌ଡେନ୍‌ଙ୍କୁ ଛାଡ଼ି ଦେଇ ଆସୁଥିଲେ । ସେହି ପରିବେଶରେ ରହି ହାଲ୍‌ଡେନ୍‌ଙ୍କ ଉପରେ କି ପ୍ରଭାବ ପଡୁଛି ତାହା ଯନ୍ତ୍ରପାତି ସାହାଯ୍ୟରେ ନିରୂପଣ କରି ଲେଖି ରଖୁଥିଲେ । ତେଣୁ, ସେହି ପିଲା ବୟସରୁ ବିଜ୍ଞାନ ଏବଂ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ପ୍ରତି ହାଲ୍‌ଡେନ୍‌ଙ୍କ ମନରେ ଆଗ୍ରହ ସୃଷ୍ଟି ହୋଇଥିଲା । ଜଣେ ନାମଜାଦା ବୈଜ୍ଞାନିକ ହେବାରେ ଏହାହିଁ ତାଙ୍କୁ ଖୁବ୍ ସାହାଯ୍ୟ କରିଥିଲା ।

ହାଲ୍‌ଡେନ୍‌ଙ୍କୁ ନଅବର୍ଷ ହେବା ବେଳଠାରୁ ସେ ଭାରତ ଏବଂ ଭାରତର ଜନସାଧାରଣଙ୍କୁ ଭଲ ପାଇବା ଆରମ୍ଭ କରିଥିଲେ । ଏକ ମାଲବାହୀ ଜାହାଜର ଭାରତୀୟ ନାବିକଙ୍କ ସଂସ୍ପର୍ଶରେ ଆସି ଭାରତ ସହ ତାଙ୍କର ପରିଚୟ ହୋଇଥିଲା । ଏହାର ଫଳ ସ୍ୱରୂପ ୧୯୬୦ ମସିହାରେ ସେ ଭାରତର ନାଗରିକ ହେଲେ । ହିନ୍ଦୁଧର୍ମରେ ଦୀକ୍ଷିତ ହେଲେ । ଭାରତୀୟଙ୍କ ବେଶପୋଷାକ ଅନୁକରଣରେ ଧୋତି ଏବଂ କୁର୍ତ୍ତା ପିନ୍ଧିଲେ ।

ଭାରତରେ ବିଜ୍ଞାନର ପ୍ରଗତି ପାଇଁ ମନପ୍ରାଣ ଢ଼ାଳି ଦେଇଥିଲେ ହାଲ୍‌ଡେନ୍ । ଓଡ଼ିଶାର ଭୁବନେଶ୍ୱରଠାରେ ଏକ ବିଜ୍ଞାନ ଗବେଷଣାଗାର ସ୍ଥାପନ କରି ସେ ହେଲେ ଏହାର ପ୍ରଥମ ନିର୍ଦ୍ଦେଶକ ।

ହାଲ୍‌ଡେନ୍ ଯୋଗ ଦେଇଥିଲେ ଇଂଲଣ୍ଡର ସେନାବାହିନୀରେ । ପ୍ରଥମ ବିଶ୍ୱଯୁଦ୍ଧରେ ଅଂଶଗ୍ରହଣ କରିଥିଲେ । ତାଙ୍କ ସହକର୍ମୀମାନଙ୍କ ମତରେ, "ହାଲ୍‌ଡେନ୍ ଥିଲେ ଅତି ସାହସୀ ଅଫିସର, ଏବଂ ଅତି ଅପରିଷ୍କାର ଅଫିସର୍ ମଧ !" ସେନାବାହିନୀରେ କାମ କଲାବେଳେ ବ୍ରିଟିଶ୍ ନୌବାହିନୀର ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଯୋଗଦାନ ସମୟରେ ଗଭୀର ଜଳରେ ଶରୀର ଉପରେ ପ୍ରଭାବ ସଂପର୍କିତ ଅନେକ ଗବେଷଣା କରିଥିଲେ ହାଲ୍‌ଡେନ୍ ।

କର୍କଟରୋଗରେ ଆକ୍ରାନ୍ତ ହୋଇ ଜେ.ବି.ଏସ୍. ହାଲ୍‌ଡେନ୍‌ଙ୍କର ମୃତ୍ୟୁ ହୋଇଥିଲା । କର୍କଟରୋଗ ହୋଇଛି ବୋଲି ଜାଣି ମଧ ସେ ଦୁଃଖ କରି ନ ଥିଲେ କି ଛାନିଆଁ ହୋଇ ପଡ଼ି ନ ଥିଲେ । ବରଂ କର୍କଟ ରୋଗୀ ଭାବରେ ତାଙ୍କ ମନରେ ଯେଉଁ ଯେଉଁ ଚିନ୍ତାସବୁ ଆସୁଥିଲା, ସେ ତାକୁ ଲେଖି ପକାଉଥିଲେ । କହିବାକୁ ଗଲେ ନିଜର ଅନୁଭୂତିରୁ ସେ ଖୁବ୍ ଆନନ୍ଦ ପାଉଥିଲେ । ତାଙ୍କୁ କର୍କଟରୋଗ ହୋଇଛି ବୋଲି ସେହି ଖୁସିରେ ସେ ଅନ୍ୟମାନଙ୍କୁ ଭୋଜିକୁ ଡ଼ାକି ଆପ୍ୟାୟିତ କରୁଥିଲେ ମଧ । ଏପରିକି, କର୍କଟ ରୋଗ ବିଷୟରେ ଲେଖିଥିଲେ ମଉଜିଆ କବିତାଟିଏ !



# ବୁଦ୍ଧିଆ ବୈଜ୍ଞାନିକ

ତାଙ୍କ ନାଁ ରିଚାର୍ଡ ଫିଲିପ୍ସ ଫାଇନ୍‌ମ୍ୟାନ୍ । ହେଲେ, ଫାଇନ୍‌ମ୍ୟାନ୍ କହିଲେ ତାଙ୍କୁ ହିଁ ବୁଝାଯାଏ । ଖୁବ୍ ମଉଜିଆ ଥିଲେ ସେ । ସେ ସବୁବେଳେ କହୁଥିଲେ, "ପଦାର୍ଥ ବିଜ୍ଞାନ ହିଁ ହେଉଛି ମୋର ଏକମାତ୍ର ସଉକ ।" ପ୍ରକୃତରେ ବି ସବୁ ଘଟଣାରେ ସେ ଦେଖୁଥିଲେ ପଦାର୍ଥ ବିଜ୍ଞାନର ରହସ୍ୟ ।

ଆମେରିକାର କର୍ଣ୍ଣେଲ୍ ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନ ବିଭାଗର ପ୍ରଫେସର୍ ଥିଲେ ଫାଇନ୍‌ମ୍ୟାନ୍ । ଅଧ୍ୟାପକ ମାନଙ୍କ ପାଇଁ ସେଠାରେ ଥାଏ ସ୍ୱତନ୍ତ୍ର ଖାଇବା ଘର । କିନ୍ତୁ, ଫାଇନ୍‌ମ୍ୟାନ ସେଠାକୁ ଖାଇବାକୁ ନ ଯାଇ ଯାଉଥିଲେ ଛାତ୍ରଛାତ୍ରୀମାନେ ଯେଉଁ ଖିଆପିଆ କରନ୍ତି ସେହି ଜାଗାକୁ । ଛାତ୍ରଛାତ୍ରୀମାନଙ୍କ ସହ ମିଶିବାପାଇଁ ଏହା ତାଙ୍କୁ ଭଲ ସୁଯୋଗ ଦେଉଥାଏ ।

ଦିନେ ସେଠାରେ ଖାଇ ବସିଥାନ୍ତି ଫାଇନ୍‌ମ୍ୟାନ୍ । ସେତିକିବେଳେ କୌଣସି ଜଣେ ଛାତ୍ର ଖାଇବା ପ୍ଲେଟକୁ ଫିଙ୍ଗି ଦେଲା ଉପରକୁ । ପ୍ଲେଟ୍‌ଟିରେ ଛାପା ହୋଇଥାଏ କର୍ଣ୍ଣେଲ୍ ବିଶ୍ୱବିଦ୍ୟାଳୟର ଚିହ୍ନ । ପ୍ଲେଟ୍‌ଟି ଦୋହଲି ତଳକୁ ଖସୁଥାଏ । ତା ସହ ଘୂରି ଚାଲିଥାଏ ବିଶ୍ୱବିଦ୍ୟାଳୟର ଚିହ୍ନଟି । କିନ୍ତୁ ପ୍ଲେଟ୍‌ଟି ଯେଉଁ ବେଗରେ ଗଡିକରୁଥାଏ ଉକ୍ତ ଚିହ୍ନଟି ଘୂରୁଥାଏ ତାହାଠାରୁ ଅଧିକ ବେଗରେ । ଏହା ଦେଖି ଫାଇନ୍‌ମ୍ୟାନଙ୍କୁ ଖୁବ୍ ମଜା ଲାଗିଲା । ସେ ସାଂଗେ ସାଂଗେ ପକେଟ୍ ଭିତରୁ ବାହାର କଲେ ସାଦା କାଗଜ ଖଣ୍ଡେ । କଲମ ଧରି ଆରମ୍ଭ କରିଦେଲେ ହିସାବ କିତାବ ଏବଂ ଆବିଷ୍କାର କରି ପକେଇଲେ ପ୍ଲେଟର ଦୋହଲିବା ଗତି ସହ ପ୍ଲେଟ୍‌ରେ ରହିଥିବା ଚିହ୍ନର ଘୂର୍ଣ୍ଣନ ମଧ୍ୟରେ ସଂପର୍କ ।

ଏହାକୁ ନେଇ ଦେଖେଇଲେ ତାଙ୍କର ସହକର୍ମୀ ଏବଂ ବିଖ୍ୟାତ ପଦାର୍ଥ ବିଜ୍ଞାନୀ ହାନ୍ସ୍ ବେଥେଙ୍କୁ । ବେଥେ ପଚାରିଲେ, 'ହେଲା ଯେ, ତମର ଏହି ଆବିଷ୍କାରରୁ କି ଲାଭ ମିଳିବ ?' ଫାଇନ୍‌ମ୍ୟାନ୍ ହସିକରି  ଉତ୍ତର ଦେଲେ, "କିଛି ଲାଭ ମିଳିବନି । ଲାଭ ମିଳିଲେ ବି ସେଥିରେ ମୋର ଯାଏ ଆସେ କେତେ ! ତେବେ, ଆବିଷ୍କାର କରିବାର ମଜା ଚାହୁଁଥିଲି, ମଜା ପାଇଗଲି ମଧ୍ୟ ।"

ଫାଇନ୍‌ମ୍ୟାନଙ୍କ ମତରେ, ପଦାର୍ଥ ବିଜ୍ଞାନ ତାଙ୍କର ପେଷା, ତାଙ୍କର ନିଶା ଏବଂ ତାଙ୍କର ମନୋରଞ୍ଜନ ମଧ୍ୟ । ତେଣୁ ପୁରସ୍କାର ଏବଂ ସମ୍ମାନ ଇତ୍ୟାଦିକୁ ସେ ଖାତିର କରୁ ନ ଥିଲେ । ବରଂ, ସେଗୁଡ଼ିକଠାରୁ ଦୂରେଇ ରହିବା ଥିଲା ତାଙ୍କର ପସନ୍ଦ । ୧୯୬୫ ମସିହାରେ ପଦାର୍ଥ ବିଜ୍ଞାନରେ ଫାଇନ୍‌ମ୍ୟାନଙ୍କୁ ନୋବେଲ ପୁରସ୍କାର ମିଳିଲା । ନୋବେଲ୍ ପୁରସ୍କାର ପାଇବା ପାଇଁ ସେ ମନା କରିଦେଲେନି କାହିଁକି ବୋଲି ପଚାରିବାରୁ ଫାଇନମ୍ୟାନ୍ ଉତ୍ତର ଦେଇଥିଲେ, ''ନୋବେଲ୍ ପୁରସ୍କାର ଗ୍ରହଣ କରିଦେଲି ବୋଲି ତ ବିଶେଷ କିଛି ହଇଚଇ ହେଲାନି । ମୁଁ ଏହାକୁ ଭୁଲିଗଲି । ଅନ୍ୟମାନେ ମଧ୍ୟ ଏ ଘଟଣାକୁ ଭୁଲିଗଲେ । କିନ୍ତୁ, ପୁରସ୍କାର ନେବି ନାହିଁ ବୋଲି ମନା କରିଦେଇଥିଲେ ଯେଉଁ ହଇଚଇ ସୃଷ୍ଟି ହୋଇଥାନ୍ତା, ତାହା ମୋର ପିଛା ଛାଡ଼ି ନ ଥାନ୍ତା । ଫଳରେ ଗବେଷଣା କାମରେ ମୁଁ ମନ ଦେଇ ପାରି ନ ଥାନ୍ତି ।''

ଫାଇନ୍‌ମ୍ୟାନ ଥିଲେ ବଡ଼ ଭୁଲା ମଣିଷ । ପଦାର୍ଥ ବିଜ୍ଞାନ ବିଷୟକୁ ଛାଡ଼ିଦେଲେ ଅନ୍ୟ କିଛି ମନେ ରଖିବା ପାଇଁ ସେ ଚେଷ୍ଟା କରୁନଥିଲେ । ଜାଗାର ନାଁ ଏବଂ ତାରିଖ ତ ଜମା ମନେ ରହୁ ନ ଥିଲା ତାଙ୍କର । ଯେଉଁସବୁ ସମ୍ମିଳନୀରେ ବକ୍ତୃତା ଦେବାପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଏ, ସେହି ସ୍ଥାନ ଏବଂ ତାରିଖକୁ ମଧ୍ୟ ସେ ଭୁଲିଯାଆନ୍ତି । ତାଙ୍କର ଧାରଣା ଥିଲା ଯେ କୌଣସି ପ୍ରକାରେ ଠିକ୍ ସମୟରେ ଠିକ୍ ଜାଗାରେ ପହଞ୍ଚି ବକ୍ତୃତା ଦେବାରେ ଅସୁବିଧା ଉପୁଜିବ ନାହିଁ ।

୧୯୫୭ ମସିହାର କଥା । ନର୍ଥ କାରୋଲିନା ବିଶ୍ୱବିଦ୍ୟାଳୟରେ 'ମାଧ୍ୟାକର୍ଷଣ' (ଗ୍ରାଭିଟି-Gravity) ବିଷୟରେ ବକ୍ତୃତା ଦେବାର ଥାଏ ଫାଇନ୍‌ମ୍ୟାନଙ୍କର । କେଉଁ ସ୍ଥାନରେ ସମ୍ମିଳନୀ ହେବ ଏବଂ କେଉଁ ସମୟରେ ତାଙ୍କର ଭାଷଣ ଦେବା କଥା ସେସବୁ ଆଗରୁ ନ ଜାଣି ସେ ଚାଲିଲେ କାରୋଲିନା ।

ବିମାନ ବନ୍ଦରରେ ବିମାନରୁ ଓହ୍ଲେଇ ବସିଗଲେ ଗୋଟିଏ ଟ୍ୟାକ୍‌ସିରେ । ଟ୍ୟାକ୍‌ସି ଡ୍ରାଇଭର୍ ପଚାରିଲେ, ''କୁଆଡ଼େ ଯିବେ ?''

''ନର୍ଥ କାରୋଲିନା ବିଶ୍ୱବିଦ୍ୟାଳୟ !'' ଉତ୍ତର ଦେଲେ ଫାଇନ୍‌ମ୍ୟାନ ।

ଟ୍ୟାକ୍‌ସି ଡ୍ରାଇଭର୍ ପୁଣି ପଚାରିଲେ, ''ରାଲେଠାରେ ଥିବା ନର୍ଥ କାରୋଲିନା ବିଶ୍ୱବିଦ୍ୟାଳୟକୁ ଯିବେ ନା ଯିବେ ଚାପେଲ୍ ହିଲ୍‌ଠାରେ ଥିବା ନର୍ଥ କାରୋଲିନା ବିଶ୍ୱବିଦ୍ୟାଳୟକୁ ?''

ଏହି ପ୍ରଶ୍ନ ଶୁଣି ବଡ଼ ଅଡୁଆରେ ପଡ଼ିଲେ ଫାଇନ୍‌ମ୍ୟାନ୍ । ସମାନ ନାଁ ଥିବା ଦୁଇଟି ବିଶ୍ୱବିଦ୍ୟାଳୟ କଥା ସେ ଚିନ୍ତା କରିପାରିନଥିଲେ । ତେଣୁ ସେ କହିଲେ, ''ଦୁଇଟି ଯାକ ବିଶ୍ୱବିଦ୍ୟାଳୟ କେଉଁଠି ? ଯଦି ଦୁଇଟି ଯାକ ପାଖାପାଖି, ତେବେ ପ୍ରଥମେ ଗୋଟିଏ ବିଶ୍ୱବିଦ୍ୟାଳୟକୁ ଯାଇ ଦରକାର ପଡ଼ିଲେ ସେଠାରୁ ଦ୍ୱିତୀୟଟାକୁ ଯିବା !

ଫାଇନ୍‌ମ୍ୟାନ୍‌ଙ୍କ କଥାଶୁଣି ଟିକିଏ ମୁରୁକି ହସି ଡ୍ରାଇଭର କହିଲେ, ''ଆଜ୍ଞା, ଏହି ସ୍ଥାନରୁ ଗୋଟିଏ ବିଶ୍ୱବିଦ୍ୟାଳୟ ଉତ୍ତରରେ ଏବଂ ଅନ୍ୟଟି ଦକ୍ଷିଣରେ ଅବସ୍ଥିତ । ପୁଣି ଦୁଇ ସ୍ଥାନର ଦୂରତା ମଧ୍ୟ ସମାନ ।

ଅନ୍ୟ କାହାକୁ ପଚାରି ନିର୍ଦ୍ଦିଷ୍ଟ ସ୍ଥାନ ଜାଣିବା ନିମନ୍ତେ ଚିନ୍ତାକଲେ ଫାଇନ୍‌ମ୍ୟାନ । ହେଲେ, ସେମିତି କୌଣସି ଲୋକକୁ ପାଇଲେନି । କଅଣ ତେବେ କରାଯାଇପାରିବ ଏବେ ? ତାହାହେଲେ କଅଣ ଦୁଇଟିଯାକ ବିଶ୍ୱବିଦ୍ୟାଳୟରେ ମୁହଁ ମାରିବାକୁ ପଡ଼ିବ ତାଙ୍କୁ ? ହଠାତ୍ ତାଙ୍କ ମୁଣ୍ଡକୁ ଜୁଟିଗଲା ବୁଦ୍ଧି । ବୈଜ୍ଞାନିକ ପଦ୍ଧତିରେ ଚିନ୍ତା କରିବା ତାଙ୍କୁ ସାହାଯ୍ୟ କଲା ।

ସେ ଟ୍ୟାକ୍‌ସି ଡ୍ରାଇଭର୍‌ଙ୍କୁ ପଚାରିଲେ, ''ଦେଖନ୍ତୁ, ଏପରି କେତେକ ବ୍ୟକ୍ତି, ଆପଣଙ୍କ ନଜରରେ ପଡ଼ିଛନ୍ତି ଯେଉଁମାନେ ମୁଣ୍ଡଟେକି, ମଥା ଉନ୍ନତ କରି ଚାଲିଛନ୍ତି । ଯାଡ଼େ ସ୍ୟାଡ଼େ, ଦୃଷ୍ଟି ନ ଦେଇ ଚାଲିଛନ୍ତି ନିଜ ନିଜ ମଧ୍ୟରେ ଆଲୋଚନା କରି କରି । ପୁଣି ମଝିରେ ମଝିରେ ଜି..(G), ଜି..(G) ବୋଲି ଉଚ୍ଚାରଣ କରୁଛନ୍ତି ? ('ଜି' ହେଉଛି ଗ୍ରାଭିଟି-ଇଂରାଜୀ ଶବ୍ଦର ଆଦ୍ୟ ଅକ୍ଷର । ସେହି 'ଗ୍ରାଭିଟି' ବିଷୟରେ ହିଁ ଫାଇନ୍‌ମ୍ୟାନଙ୍କର ଭାଷଣ ଦେବା ସ୍ଥିର ହୋଇଥିଲା ।)

ଡ୍ରାଇଭରଙ୍କ ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଉତ୍ତରଦେଲେ, ''ହଁ, ହଁ, ଅନେକ ବ୍ୟକ୍ତି ମୁଣ୍ଡ ଟେକି, 'ଜି'.... 'ଜି'..... ଆଲୋଚନା କରି ତ ଯାଉଛନ୍ତି ଚାପେଲ୍ ହିଲ୍ ଆଡ଼େ ।

ଫାଇନ୍‌ମ୍ୟାନ୍‌ଙ୍କୁ ସମାଧାନ ମିଳିଗଲା । ସେ ମୁରୁକିହସା ଦେଇ କହିଲେ ''ମୋତେ ସେହି ଚାପେଲ ହିଲ୍‌ରେ ଥିବା ନର୍ଥ କାରୋଲିନା ବିଶ୍ୱବିଦ୍ୟାଳୟକୁ ନେଇ ଚାଲନ୍ତୁ ।''

ଫାଇନ୍‌ମ୍ୟାନ ଠିକ୍ ସମୟରେ ସମ୍ମିଳନୀ ସ୍ଥାନରେ ପହଞ୍ଚି ବକ୍ତୃତା ଦେବା ଆରମ୍ଭ କରିଦେଲେ ।

ଫାଇନ୍‌ମ୍ୟାନଙ୍କ ବିଷୟରେ ଏହିପରି ଅନେକ ମଉଜିଆ କଥା ଶୁଣିବାକୁ ମିଳେ ।



# 'ବଢି ଡାକ୍ତର'

ଆଜିକୁ ଠିକ୍ ୧୦୦ ବର୍ଷ ତଳେ, ୧୯୦୦ ମସିହାରେ, କଲିକତାଠାରେ ସ୍ଥାପନ କରାଯାଇଥିଲା ଏକ ଔଷଧ ତିଆରି କାରଖାନା । କାରଖାନାଟିର ନାଁ ଥିଲା 'ବେଙ୍ଗଲ୍ କେମିକାଲ୍ ଆଣ୍ଡ୍ ଫାର୍ମାସିଉଟିକାଲ୍ ୱାର୍କସ୍' । ଏହାକୁ ସ୍ଥାପନ କରିଥିଲେ ଡ଼କ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟ । ସେତେବେଳକୁ ଭାରତ ଥିଲା ପରାଧୀନ । ଭାରତୀୟ ବୈଜ୍ଞାନିକମାନଙ୍କୁ ଗବେଷଣାର ସୁଯୋଗ ଦେବା ଥିଲା ସେହି କାରଖାନା ବସେଇବାର ପ୍ରଧାନ ଉଦ୍ଦେଶ୍ୟ । ମାତ୍ର ୮୦୦ ଟଙ୍କା ଖର୍ଚ୍ଚ ହୋଇଥିଲା କାରଖାନା ବସେଇବାରେ ।

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କୁ ସମସ୍ତେ ଆଚାର୍ଯ୍ୟ ପି.ସି. ରାୟ ବୋଲି ଜାଣନ୍ତି । ପି.ସି. ରାୟ ଥିଲେ ଜଣେ ରସାୟନ ବିଜ୍ଞାନୀ ।

ବଡ଼ ସରଳ ଜୀବନ ଯାପନ କରୁଥିଲେ ସେ । ଅଯଥା ଖର୍ଚ୍ଚ କରିବା ତାଙ୍କ ଜାତକରେ ନ ଥିଲା । ପ୍ରଥମେ ସେ ମିଲ୍ ଲୁଗା ପିନ୍ଧୁଥିଲେ । କିନ୍ତୁ, ପରେ ପିନ୍ଧିଲେ ଖଦି । ତନ୍ତବୁଣା ଏହି ମୋଟା ସୂତା ଲୁଗା ପିନ୍ଧାକୁ ସେ ଆଉ ଛାଡ଼ି ପାରିଲେ ନାହିଁ । ଏପରିକି ଚିରା ଫଟା ଲୁଗା ପିନ୍ଧିବାରେ ବି ତାଙ୍କଠାରେ କୁଣ୍ଠା ନ ଥିଲା ।

ନିଜ ଲୁଗାକୁ ସେ ନିଜେ ସଫା କରୁଥିଲେ । ପିନ୍ଧା ଜୋତାକୁ ନିଜେ ରଙ୍ଗ ଦେଉଥିଲେ । ତାଙ୍କର ଖାଇବା ପିଇବା ମଧ୍ୟ ଥିଲା ଅତି ସାଧାରଣ ।

ଡ଼କ୍ଟର ପି.ସି. ରାୟ ଜୀବନରେ ଆଦୌ ବିବାହ କରି ନ ଥିଲେ । ଯାହା କିଛି ରୋଜଗାର କରୁଥିଲେ ତାକୁ ଅନ୍ୟମାନଙ୍କୁ ଦାନ କରିଦେଉଥିଲେ । ସବୁବେଳେ ତିନି ଚାରିଜଣ ଛାତ୍ରଙ୍କୁ ନିଜ ଘରେ ରଖି ସେମାନଙ୍କ ଖାଇବା ପିଇବା, ପୋଷାକ ପତ୍ର, ବହିଖାତା ସ୍କୁଲ-କଲେଜ୍‌ର ଦରମା ଇତ୍ୟାଦିର ଖର୍ଚ୍ଚ ବହନ କରୁଥିଲେ ସେ । ବହୁ ଅନୁଷ୍ଠାନ ଏବଂ ଟ୍ରଷ୍ଟକୁ ମଧ୍ୟ ନିୟମିତ ଟଙ୍କାପଇସା ସାହାଯ୍ୟ ଦେଉଥିଲେ ।

ତାଙ୍କର ଏହି ସରଳ ଜୀବନ ଯାପନ ପ୍ରଣାଳୀ ଏବଂ ଦୟାଳୁ ସ୍ୱଭାବ ଦେଖି ଲୋକେ ତାଙ୍କୁ ନାଁ ଦେଇଥିଲେ 'ଆଚାର୍ଯ୍ୟ' ବୋଲି । ତେଣୁ, ଆଚାର୍ଯ୍ୟ ପି.ସି. ରାୟ କହିଲେ ଡ଼କ୍ଟର ପି.ସି. ରାୟଙ୍କୁ ହିଁ ବୁଝାଏ ।

ବୈଜ୍ଞାନିକ ପି.ସି. ରାୟ କୌଣସି ରାଜନୈତିକ ପାର୍ଟିରେ ଯୋଗ ଦେଇ ନ ଥିଲେ । କିନ୍ତୁ, ଭାରତର ସ୍ୱାଧୀନତା ଆନ୍ଦୋଳନରୁ ସେ ନିଜକୁ ମୁକ୍ତ ରଖି ପାରିଲେ ନାହିଁ । ସେ ଚାରିଆଡ଼େ ବୁଲି ଭାଷଣ ଦେଉଥିଲେ । ତାଙ୍କର ଭାଷଣ ଥିଲା ଖୁବ୍ ମନଛୁଆଁ । ତାଙ୍କ ଭାଷଣ ଶୁଣିଲେ ଲୋକେ ଦେଶପ୍ରେମରେ ପାଗଳ ହୋଇ ଉଠୁଥିଲେ । ସେ ଥିଲେ ଜଣେ ବୈଜ୍ଞାନିକ । କିନ୍ତୁ ବିଜ୍ଞାନ ତୁଳନାରେ ସ୍ୱାଧୀନତା ଲାଭକୁ ସେ ଦେଉଥିଲେ ପ୍ରଧାନ ସ୍ଥାନ । ଥରେ ନିଜ ଭାଷଣରେ ଆଚାର୍ଯ୍ୟ ପି.ସି. ରାୟ କହିଥିଲେ, ''ବିଜ୍ଞାନ ହୁଏତ କିଛିଦିନ ପାଇଁ ଅପେକ୍ଷା କରିପାରିବ ସିନା, ହେଲେ 'ସ୍ୱରାଜ' କିନ୍ତୁ ଅପେକ୍ଷା କରି ପାରିବ ନାହିଁ ।

ସେ ଯାହାହେଉ, ସେତେବେଳେ ବର୍ଷାଋତୁରେ ବଢ଼ି ହେବା ଥିଲା ଏକ ସାଧାରଣ ଘଟଣା । ନଈ ବଢ଼ିଲେ, ଆଖପାଖ ଅଞ୍ଚଳର ଲୋକଙ୍କ ଦୁର୍ଦ୍ଦଶାର ସୀମା ରହୁ ନ ଥିଲା । ସେମାନଙ୍କ ଘର, ଗୋରୁଗାଈ, ଧାନଚାଉଳ ଆଦି ବଢ଼ି ପାଣିରେ ଭାସି ଯାଉଥିଲା । ଖାଇବାକୁ ନ ପାଇ ଏବଂ ଦୂଷିତ ଜଳ ପିଇ ଲୋକେ ନାନା ରୋଗରେ ଆକ୍ରାନ୍ତ ହୋଇପଡୁଥିଲେ । ଅନେକ ମୃତ୍ୟୁମୁଖରେ ପଡୁଥିଲେ ମଧ୍ୟ ।

ଓଡ଼ିଶାର ଉତ୍କଳମଣି ଗୋପବନ୍ଧୁଙ୍କ ଭଳି ବଙ୍ଗଳାର ଆଚାର୍ଯ୍ୟ ପି.ସି. ରାୟ ବଢ଼ି ଅଞ୍ଚଳର ଲୋକଙ୍କ ଦୁଃଖ ସହି ପାରୁ ନ ଥିଲେ । ସେମାନଙ୍କ ଦୁଃଖଦୁର୍ଦ୍ଦଶା କଥା ଭାବି ସେ କାନ୍ଦି ପକାଉଥିଲେ । ତେଣୁ, କୌଣସି ସ୍ଥାନରେ ବଢ଼ି ମାଡ଼ିଥିବାର ଖବର ପାଇବା ମାତ୍ରେ ନିଜର ସବୁକାମକୁ ପଛକୁ ପକେଇ ସେଠାକୁ ଧାଇଁ ଯାଉଥିଲେ ସେ । ସେମାନଙ୍କ ସେବା କରୁଥିଲେ । ସେମାନଙ୍କୁ ଚୁଡ଼ା ଚାଉଳ ବାଣ୍ଟୁଥିଲେ ।

ଆଚାର୍ଯ୍ୟ ପି.ସି. ରାୟଙ୍କର ସରଳ ଜୀବନଯାପନ ପ୍ରଣାଳୀ ମହାତ୍ମାଗାନ୍ଧୀଙ୍କୁ ଖୁବ୍ ଅଭିଭୂତ କରୁଥିଲା । ଜଣେ ଋଷିଭଳି ଆଚରଣ ଦେଖାଉଥିବାରୁ ଗାନ୍ଧୀ ତାଙ୍କୁ ଖୁବ୍ ସମ୍ମାନ କରୁଥିଲେ । ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ସେବା କରିବାରେ ଆଦୌ ହେଳା ନ କରିବା ଏବଂ ବଢ଼ିର ଖବର ପାଇବା ମାତ୍ରେ ତୁରନ୍ତ ବଢ଼ି ଅଞ୍ଚଳରେ ପହଞ୍ଚିଯିବା ଆଚାର୍ଯ୍ୟ ପି.ସି. ରାୟଙ୍କର ଥିଲା ଏକ ବିଶେଷ ଗୁଣ । ଏହାକୁ ଲକ୍ଷ୍ୟ କରି ମହାତ୍ମାଗାନ୍ଧୀ କହିଥିଲେ, ''ଆଚାର୍ଯ୍ୟ ପି.ସି. ରାୟ ହେଉଛନ୍ତି ବଢ଼ି ଡ଼ାକ୍ତର ।''



# ରାମାନୁଜନ୍‌ଙ୍କ ଫଟୋ

ତୁମ୍ଭମାନଙ୍କ ମଧ୍ୟରୁ କେହି କେହି ଶ୍ରୀନିବାସ ରାମାନୁଜନ୍‌ଙ୍କ ନାଁ ଶୁଣିଥିବ । ଗଣିତ ବିଦ୍ୟାରେ ସେ ପୃଥିବୀରେ ଖୁବ୍ ନାଁ କରିଥିଲେ । କିନ୍ତୁ, ତାଙ୍କର ଏହି ଦକ୍ଷତା ଗ୍ରାମ ଦେବତୀ ନାମାଗ୍ଲାଲଙ୍କର ବରଦାନ ବୋଲି ମନେ କରୁଥିଲେ ସେ । କଥିତ ଅଛି, ରାମାନୁଜନ୍‌ଙ୍କ ମାମୁଁଘରେ ଆଉ ଥରେ କୁଆଡ଼େ ସ୍ୱପ୍ନ ଦେଖିଲେ ଯେ ତାଙ୍କ ଝିଅର ପୁଅ ସାହାଯ୍ୟରେ ନାମାଗ୍ଲାଲ ସଂସାର ସାଂଗରେ କଥାବାର୍ତ୍ତା ହେବେ ! ନିଜ ଗ୍ରାମ ଦେବତୀ ନାମାଗ୍ଲାଲ୍‌ଙ୍କ ମହିମା ସଂପର୍କରେ ବହୁ ଆଶ୍ଚର୍ଯ୍ୟଜନକ ଗପ ଶୁଣି ରାମାନୁଜନ୍ ସର୍ବଦା ତାଙ୍କର ଆଶୀର୍ବାଦ ଭିକ୍ଷା କରୁଥିଲେ । ଏହା ତାଙ୍କ ମନ ଉପରେ ଏପରି ପ୍ରଭାବ ପକାଇଥିଲା ଯେ ରାମାନୁଜନ୍ ବିଶ୍ୱାସ କରୁଥିଲେ, ନାମାଗ୍ଲାଲ୍ ସ୍ୱପ୍ନରେ ଆସି ଗଣିତର ଜଟିଳ ବିଷୟଗୁଡ଼ିକର ସମାଧାନପନ୍ଥା ତାଙ୍କୁ କହି ଦେଉଥିଲେ ।

ରାମାନୁଜନ୍ ଥିଲେ ଖୁବ୍ ସରଳ । ପ୍ରଫେସର ଜି.ଏଚ୍. ହାର୍ଡିଙ୍କ ଅଧୀନରେ ଗଣିତରେ ଗବେଷଣା କରିବା ନିମନ୍ତେ ସେ ଯାଇଛନ୍ତି ଇଂଲଣ୍ଡ । ସେଠାରେ, କ୍ୟାମ୍ବ୍ରିଜ୍‌ରେ ରହୁଥାନ୍ତି ସେ । ସେଇଠି କେ. ଆନନ୍ଦ ରାଓ ନାମକ ଅନ୍ୟ ଜଣେ ଭାରତୀୟ ଗଣିତଜ୍ଞଙ୍କ ସହ ତାଙ୍କର ଦେଖାହେଲା । କଥାବାର୍ତ୍ତା ହେଉ ହେଉ ଆନନ୍ଦ ରାଓ ରାମାନୁଜନ୍‌ଙ୍କୁ କହିଲେ, ‘‘ସ୍ମିଥ୍ ପୁରସ୍କାର ପାଇବା ନିମନ୍ତେ ମୁଁ ଏବେ ଗଣିତ ବିଷୟରେ ପ୍ରବନ୍ଧଟିଏ ଲେଖିବାରେ ବ୍ୟସ୍ତ ଅଛି ।’’

ରାମାନୁଜନ୍ ତ ଥିଲେ ଅତି ସାଦାସିଧା ଆଉ ନୀରିହ । ସ୍ମିଥ୍ ପୁରସ୍କାର ପାଇବା ପାଇଁ ଗଣିତ ପ୍ରବନ୍ଧ ଲେଖିବା ନିମନ୍ତେ ତାଙ୍କ ମନ ବି ହାଇଁ ପାଇଁ ହେଲା । ତେଣୁ, ସେ ଯାଇ ପହଞ୍ଚିଗଲେ ପ୍ରଫେସର୍ ହାର୍ଡିଙ୍କ ନିକଟରେ ।

ହାର୍ଡି ପଚାରିଲେ, ‘‘କଅଣ ଖବର ? କୁଆଡ଼େ ଆସିଲ ରାମାନୁଜନ୍ ?’’

ଏହାଶୁଣି, ରାମାନୁଜନ୍‌ଙ୍କ ସରଳତା ଏବଂ ନମ୍ରତାରେ ମୁଗ୍ଧ ହୋଇଗଲେ ପ୍ରଫେସର ହାର୍ଡି । ରାମାନୁଜନ୍‌ଙ୍କ ନିକଟକୁ ଚାଲିଆସି ତାଙ୍କ କାନ୍ଧ ଉପରେ ହାତ ରଖିଦେଇ କହିଲେ, ‘‘ରାମାନୁଜନ୍, ସ୍ମିଥ୍ ପୁରସ୍କାର ତୁମ ଦକ୍ଷତାକୁ ଚାହିଁ ଅତିଛୋଟ ପୁରସ୍କାରଟିଏ । ଗଣିତରେ ତୁମେ ଯେଉଁ ନାଁ କମେଇ ସାରିଛ, ତାହା ତୁଳନାରେ ସ୍ମିଥ୍ ପୁରସ୍କାର କିଛି ନୁହେଁ । ସେ ପୁରସ୍କାର ତମ ଲାଖି ନୁହେଁ । ତେଣୁ, ତାକୁ ଭୁଲିଯାଅ ।’’

ତୁମ୍ଭେମାନେ ଶ୍ରୀନିବାସ ରାମାନୁଜନ୍‌ଙ୍କର ଯେଉଁ ଫଟୋ ଦେଖିବାକୁ ପାଉଛ, ସେଥିପାଇଁ ସୁବ୍ରମନିୟାମ୍ ଚନ୍ଦ୍ରଶେଖରଙ୍କୁ କୃତଜ୍ଞତା ଜଣାଇବା କଥା ! ତାଙ୍କ ଫଟୋଟି କିପରି ସଂଗ୍ରହ କରାଗଲା,ସେ ସଂପର୍କରେ ରହିଛି ଏକ ମଜା କାହାଣୀ ।

ଶ୍ରୀନିବାସ ରାମାନୁଜନ୍ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ କେତୋଟି ଭାଷଣ ଦେଇଥିଲେ । ସେହି ଭାଷଣ ଗୁଡ଼ିକୁ ଛପେଇ ପୁସ୍ତକଟିଏ ପ୍ରକାଶ କରିବାକୁ ଚାହିଁଲେ ପ୍ରଫେସର ହାର୍ଡି । ପୁସ୍ତକଟିରେ ରାମାନୁଜନ୍‌ଙ୍କ ଫଟୋ ଛାପିବା ପାଇଁ ସେ ନିଷ୍ପତ୍ତି ନେଲେ ସତ, ହେଲେ, ଫଟୋଟିଏ ତାଙ୍କୁ ମିଳିଲାନି !

ସେହି ସମୟରେ ଭାରତକୁ ଆସିଥାନ୍ତି ସୁବ୍ରମନିୟାମ୍ ଚନ୍ଦ୍ରଶେଖର । ସେତେବେଳେ ରାମାନୁଜନ୍‌ଙ୍କ ପତ୍ନୀ ରହୁଥାନ୍ତି ମାନ୍ଦ୍ରାଜ ବା ଏବକାର ଚେନ୍ନାଇରେ । ଚନ୍ଦ୍ରଶେଖର ରାମାନୁଜନ୍‌ଙ୍କ ସ୍ତ୍ରୀଙ୍କୁ ଦେଖାକରି ତାଙ୍କୁ ରାମାନୁଜନ୍‌ଙ୍କ ଫଟୋଟିଏ ମାଗିଲେ । ପୁରୁଣା ଟ୍ରଙ୍କ୍ ଦରଣ୍ଡା ଦରଣ୍ଡି କରିବାରୁ ମଇଳା ଦାଗ ଲଗା ପୁରୁଣା ପାସ୍‌ପୋର୍ଟ ସାଇଜର ଫଟୋଟିଏ ମିଳିଗଲା ସ୍ତ୍ରୀଙ୍କୁ । ସେହି ଫଟୋଟିକୁ ସେ ଚନ୍ଦ୍ରଶେଖରଙ୍କୁ ଧରେଇ ଦେଲେ । ହୁଏତ, ଇଂଲଣ୍ଡ ଯିବା ପୂର୍ବରୁ ପାସ୍‌ପୋର୍ଟରେ ଲଗେଇବା ନିମନ୍ତେ ରାମାନୁଜନ୍ ସେହି ଫଟୋଟିକୁ ଉଠେଇଥିଲେ ଓ ତାର ଗୋଟିଏ ନକଲ ଘରେ ରହିଯାଇଥିଲା ।

ସେହି ପାସ୍‌ପୋର୍ଟ ସାଇଜ୍‌ର ଫଟୋଟିକୁ ନେଇ ସେଥିରୁ ବଡ଼ ଆକାରର ତିନୋଟି ଫଟୋ ଛପେଇ ଆଣିଲେ ଚନ୍ଦ୍ରଶେଖର । ଗୋଟିଏ ଫଟୋ ଦେଲେ ଶ୍ରୀମତୀ ରାମାନୁଜନ୍‌ଙ୍କୁ । ଅନ୍ୟ ଗୋଟିଏ ଫଟୋ ଦେଲେ ପ୍ରଫେସର ହାର୍ଡିଙ୍କୁ । ତୃତୀୟ ଫଟୋଟିକୁ ବନ୍ଧେଇସାରି ଟାଙ୍ଗି ଦେଲେ ନିଜ କୋଠରୀରେ ।

ବିରାଟ ଗଣିତଜ୍ଞ ଶ୍ରୀନିବାସ ରାମାନୁଜନ୍‌ଙ୍କ ଯେଉଁ ଫଟୋଟି ସାରା ପୃଥିବୀରେ ଦେଖିବାକୁ ମିଳୁଛି ତାହା ହିଁ ତାଙ୍କର ବାସ୍ତବ ଫଟୋ । ସୁବ୍ରମନିୟାମ୍ ଚନ୍ଦ୍ରଶେଖରଙ୍କ ଉଦ୍ୟମ ଫଳରେ ହିଁ ତାହା ଲୋକଲୋଚନକୁ ଆସିପାରିଲା ।

ପରେ, ସେହି ଫଟୋଟିକୁ ଦେଖି ଶିଳ୍ପୀ ପଲି ଗ୍ରାନ୍‌ଲୁଣ୍ଡ୍ ରାମାନୁଜନ୍‌ଙ୍କର ଏକ ଆବକ୍ଷ ମୂର୍ତ୍ତି ନିର୍ମାଣ କରିଛନ୍ତି । ଉକ୍ତ ମୂର୍ତ୍ତିଟି ରହିଛି ଆମେରିକାରେ ।

ଶ୍ରୀନିବାସ ରାମାନୁଜନ୍ ବଞ୍ଚିଥିଲେ ଜମା ୩୩ ବର୍ଷ । ସେ ମୃତ୍ୟୁ ବରଣ କରିଥିଲେ ଯକ୍ଷ୍ମାରୋଗରେ । ସେତେବେଳେକୁ ଯକ୍ଷ୍ମାରୋଗର ଚିକିତ୍ସା ପାଇଁ ଔଷଧ ବାହାରି ନ ଥିଲା ।

ରାମାନୁଜନଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରି ପ୍ରଫେସର ହାର୍ଡି କହିଥିଲେ, ''ଗଣିତ ଶାସ୍ତ୍ରର ବହୁ ଜଟିଳ କଥା ମୁଁ ଶିଖିଛି ଶ୍ରୀନିବାସ ରାମାନୁଜନ୍‌ଙ୍କଠାରୁ । ତାଙ୍କ ସଂସ୍ପର୍ଶରେ ଆସି ମୁଁ ଧନ୍ୟ ହୋଇଯାଇଛି ।''



# ମହିଳା ବୈଜ୍ଞାନିକ ସଂଗଠନର ପୁରୁଷ ସଭାପତି !

ମହିଳାମାନଙ୍କ ପ୍ରତି ନ୍ୟାୟ କରାଯାଉନାହିଁ ବୋଲି ସବୁବେଳେ ଅଭିଯୋଗ ମାନ ଶୁଣିବାକୁ ମିଳୁଛି । ତେଣୁ, ପୃଥିବୀର ଅଧିକାଂଶ ଦେଶର ସେମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଅଧିକ ଅଧିକାର ଦିଆଯାଉଛି । ଆମ ଦେଶରେ ମଧ୍ୟ ୨୦୦୧ ମସିହାକୁ 'ମହିଳା ସଶକ୍ତୀକରଣ' ବର୍ଷରୂପେ ପାଳନ କରାଯାଇଛି । ଆମ୍ଭମାନଙ୍କର ମାଆ, ଭଉଣୀ, ଝିଅ, ବୋହୂ ଏବଂ ସ୍ତ୍ରୀମାନେ ହେଲେ ମହିଳା ଗୋଷ୍ଠୀର ଅନ୍ତର୍ଭୁକ୍ତ । ତେଣୁ, ମହିଳା ମାନଙ୍କ ପ୍ରତି ବାଛବିଚାର ଆଚରଣ ଆମ ମାଆ, ଭଉଣୀ, ଝିଅ, ବୋହୂଙ୍କ ପ୍ରତି ବାଛବିଚାର ଆଚରଣ !

ଜର୍ମାନୀରେ ଥିଲେ ଜଣେ ମହିଳା । ଗଣିତ ବିଦ୍ୟାରେ ତାଙ୍କର ଖୁବ୍ ଦଖଲ ଥିଲା । ଏର୍‌ଲାଞ୍ଜେନ୍ ଏବଂ ଗଟିନ୍‌ଜେନ୍ ବିଶ୍ୱବିଦ୍ୟାଳୟରେ ସେ ଗଣିତ ପଢ଼ିଥିଲେ । ୧୯୦୭ ମସିହାରେ ପି.ଏଚ୍.ଡି. ଉପାଧି ଲାଭ କରିଥିଲେ ଗଣିତରେ । ତା ପରେ ଗଟିନ୍‌ଜେନ୍, ମସ୍କୋ ଏବଂ ଫ୍ରାଙ୍କ୍‌ଫର୍ଟରେ ଗଣିତ ଅଧ୍ୟାପକ ରୂପେ କାମ କରିଥିଲେ । ସେହି ମହିଳା ଜଣଙ୍କର ନାଁ ଆମାଲି ଏମ୍ମି ନୋଥର ।

ଗଣିତ ବିଦ୍ୟାରେ ଏମ୍ମି କେତେକ ନୂଆ ନୂଆ ତଥ୍ୟ ସଂପର୍କରେ ସୂଚନା ଦେଇଥିଲେ । ତେଣୁ, ତାଙ୍କୁ ଜଣେ ବିଖ୍ୟାତ ଗଣିତଜ୍ଞର ସମ୍ମାନ ଦିଆଯାଏ । କିନ୍ତୁ, ଜଣେ ମହିଳା ହୋଇ ମଧ୍ୟ ଗଣିତ ଶାସ୍ତ୍ରରେ ପାରଦର୍ଶିତା ଦେଖାଇବା ପୁରୁଷମାନଙ୍କୁ ଖୁବ୍ ବାଧୁଥିଲା । ଏହି କାରଣରୁ, ଜର୍ମାନୀ ବିଶ୍ୱବିଦ୍ୟାଳୟରେ ପାଠ ପଢ଼େଇବା ନିମନ୍ତେ ତାଙ୍କୁ ଅନୁମତି ମିଳୁ ନ ଥିଲା । ପୁରୁଷ ଅଧ୍ୟାପକମାନେ ଏହା କରେଇ ଦେଉ ନ ଥିଲେ । ତଥାପି ଏମ୍ମିଙ୍କୁ ନ୍ୟାୟ ଦେବାପାଇଁ ପ୍ରାଣପଣେ ଚେଷ୍ଟା ଚଳେଇ ଥିଲେ ସେହି ସମୟର କେଇଜଣ ଖ୍ୟାତନାମା ଗଣିତଜ୍ଞ । ସେମାନଙ୍କ ମଧ୍ୟରେ ଥିଲେ ଡ଼ାଭିଡ୍ ହିଲ୍‌ବର୍ଟ । ଗଣିତଜ୍ଞ ହିସାବରେ ଡ଼ାଭିଡ୍ ହିଲ୍‌ବର୍ଟ ଥିଲେ ଖୁବ୍ ଜଣାଶୁଣା ।

ଥରେ ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କର ଏକ ସଭା ବସିଥାଏ । ସେହି ସଭାରେ ଏମ୍ମିଙ୍କୁ ଅଧ୍ୟାପକ ଚାକିରି ଦେବା ନିମନ୍ତେ କଥା ପଡ଼ିଲା । ଡ଼ାଭିଡ୍ ହିଲ୍‌ବର୍ଟଙ୍କୁ ଛାଡ଼ି ଅନ୍ୟ ସମସ୍ତେ ଏହି ପ୍ରସ୍ତାବ ଶୁଣି ନାକ ଟେକିଲେ । ସେମାନେ ଏହାର କଡ଼ା ବିରୋଧ କଲେ । ଏମ୍ମି ଜଣେ ମହିଳା ହୋଇଥିବାରୁ ତାଙ୍କୁ କୌଣସି ମତେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଚାକିରୀ ନ ଦେବା ଥିଲା ସେମାନଙ୍କର ଦାବି ।

ସେମାନଙ୍କର ମହିଳା ବିରୋଧୀ ଯୁକ୍ତି ଶୁଣି ଖୁବ୍ ରାଗିଗଲେ ଡ଼ାଭିଡ୍ ହିଲ୍‌ବର୍ଟ । ସେମାନଙ୍କୁ ପରିହାସ କରି ଜର୍ମାନ୍ ଭାଷାରେ ସେ କହିଲେ 'ମେଇନ୍ ହେରେନ୍' ।

'ମେଇନ୍ ହେରେନ୍'ର ଅର୍ଥ ହେଲା ''ପ୍ରାର୍ଥୀର ଲିଙ୍ଗ (ନାରୀ କି ପୁରୁଷ)କୁ ବିଚାରକୁ ନେଇ ତାଙ୍କୁ ଅଧ୍ୟାପକ ଚାକିରୀ ଦେବା ନ ଦେବାର ଯୁକ୍ତିକୁ ମୁଁ ଆଦୌ ଗ୍ରହଣ କରିପାରୁନାହିଁ । ବିଶ୍ୱବିଦ୍ୟାଳୟଟା ତ ଗୋଟିଏ ସର୍ବସାଧାରଣ ଗାଧୁଆଘାଟ ନୁହେଁ ଯେ ଏଠାରେ ନାରୀ ଏବଂ ପୁରୁଷଙ୍କ ପାଇଁ ଅଲଗା ଅଲଗା ଘାଟର ବ୍ୟବସ୍ଥା ରହିବ ଏବଂ ପୁରୁଷମାନଙ୍କ ଇଲାକାକୁ ନାରୀମାନେ ପଶିପାରିବେ ନାହିଁ !''

ଜୀବନସାରା ହିଲ୍‌ବର୍ଟ ମହିଳାମାନଙ୍କ ଅଧିକାର ପାଇଁ ଲଢ଼ିଥିଲେ । ସେମାନଙ୍କୁ ଶିକ୍ଷାପ୍ରଦାନ କରି ବଡ଼ ବଡ଼ ପଦବୀରେ ନିଯୁକ୍ତି ଦେବା ନିମନ୍ତେ ଦାବି ଜଣାଉଥିଲେ । ମହିଳାମାନଙ୍କ ପକ୍ଷ ନେଇ ଲଢୁଥିବାରୁ ତାଙ୍କୁ ବହୁ ଥଟ୍ଟା ପରିହାସ ଶୁଣିବାକୁ ପଡୁଥିଲା । ଏପରିକି ତାଙ୍କୁ ଅପମାନ ଦେବାପାଇଁ କେତେକ ପୁରୁଷ ମିଶି ଗଠନ କରି ପକେଇଲେ ଏକ ମିଛମିଛିକା ସମିତି ବା ସଂଗଠନ । 'ମହିଳା ବୈଜ୍ଞାନିକ ସଂଗଠନ' ବୋଲି ଏହାର ନାମ ରଖିଲେ ସେମାନେ । ହିଲ୍‌ବର୍ଟଙ୍କ ୫୦ ତମ ଜନ୍ମ ଦିବସରେ ତାଙ୍କୁ ଏହି ମିଛ ମହିଳା ବୈଜ୍ଞାନିକ ସଂଗଠନର ଆଜୀବନ ସଭାପତି ରୂପେ ମନୋନୀତ କରି ଅଭିନନ୍ଦନ ଜଣେଇଥିଲେ ହିଲ୍‌ବର୍ଟଙ୍କୁ । କିନ୍ତୁ, ମହିଳାମାନଙ୍କ ସ୍ୱାର୍ଥରକ୍ଷାକୁ ଦୃଷ୍ଟିରେ ରଖି ଏଥିରେ ସଂପୂର୍ଣ୍ଣ ଅବିଚଳିତ ରହିଥିଲେ ସେ ।

ସେହିପରି, ରୁଷିଆର ଗଣିତ ବିଜ୍ଞାନୀ ସୋଫିଆ କୋଭାଲେଭ୍‌ସ୍କାୟାଙ୍କୁ ମଧ ବାଛ ବିଚାର ମୂଳକ ବ୍ୟବହାର ଦେଖା ଯାଇଥିଲା । ମହିଳା ହେବାଟା ହିଁ ଥିଲା ତାଙ୍କର ଦୋଷ ! ସେତେବେଳେ ଝିଅ ଏବଂ ନାରୀମାନଙ୍କୁ ବେଶି ପଢ଼ିବାର ସୁଯୋଗ ମିଳୁ ନ ଥିଲା । କଲେଜରେ ସେମାନେ ନାଁ ଲେଖେଇ ପାରୁ ନ ଥିଲେ ।

ବିଦେଶରେ ଗଣିତ ପଢ଼ିବାର ସୁଯୋଗ ପାଇବା ନିମନ୍ତେ ସୋଫିଆ ମିଛମିଛକା ବିବାହ କରିଥିଲେ ଭ୍ଲାଡ଼ିମିର୍ କୋଭାଲେଭ୍‌ସ୍କି ନାମକ ଜଣେ ବ୍ୟକ୍ତିଙ୍କୁ । ସେହି ବ୍ୟକ୍ତିଜଣକ ଥିଲେ ବିଜ୍ଞାନ ବହିଗୁଡ଼ିକର ଜଣେ ପ୍ରକାଶକ । ବିବାହ କରିଥିବାର ବାହାନା ଦେଖେଇ 'ମିଛସ୍ୱାମୀ'ଙ୍କ ସାଂଗରେ ସେ ବିଦେଶ ଯିବାର ସୁଯୋଗ ପାଇଗଲେ ।

ସୋଫିଆ ମଧ ଥିଲେ ଜଣେ ଭଲ ଲେଖିକା । ''ରୁଷିଆରେ ପିଲାବେଳ'' ନାମକ ତାଙ୍କ ରଚିତ ବହି ଖୁବ୍ ଆଦର ପାଇଥିଲା । ତାଙ୍କର ଅନ୍ୟ ଏକ ଉପନ୍ୟାସର ନାମ 'ଜଣେ ଅବହେଳିତ ବାଳିକା' । ଏହି ପୁସ୍ତକଟିରେ ନାରୀମାନଙ୍କର ସ୍ୱାଧୀନତା ଏବଂ ଅଧିକାର ବିଷୟରେ ଅନେକ କିଛି କୁହାଯାଇଥିଲା । ପୁସ୍ତକଟିର ବିଷୟବସ୍ତୁ ରୁଷିଆର ସମ୍ରାଟ ଏବଂ ପୁରୁଷମାନଙ୍କ ମନକୁ ପାଇଲାନି । ତେଣୁ, ସେମାନେ ରାଗିଯାଇ ପୁସ୍ତକଟିକୁ ନିଷିଦ୍ଧ ଘୋଷଣା କରିଦେଇଥିଲେ ।

ଏବେ ମଧ ନାରୀମାନଙ୍କୁ ପୁରୁଷମାନଙ୍କ ଭଳି ମର୍ଯ୍ୟାଦା ମିଳୁନାହିଁ । ତେବେ, କ୍ରମେ ଅବସ୍ଥା ସୁଧୁରିବାରେ ଲାଗିଛି । ନାରୀମାନେ ସେମାନଙ୍କର ଅଧିକାର ଫେରି ପାଉଛନ୍ତି ।



# ଜିଦ୍‌ଖୋରିଆ ବ୍ୟାଣ୍ଟିଙ୍ଗ୍

ବ୍ୟାଣ୍ଟିଙ୍ଗଙ୍କ ଓଠରୁ ଝରି ଯାଉଥିଲା ରକ୍ତ । ନିଃଶ୍ୱାସ ପ୍ରଶ୍ୱାସ ଚାଲିଥିଲା ଖୁବ୍ ଜୋର୍‌ରେ । ସେ ବାଉଳି ଚାଉଳି ହେଉଥିଲେ । ଅନାବନା ସ୍ୱପ୍ନମାନ ଦେଖୁଥିଲେ । ପୁଣି କେତେବେଳେ ଚେତା ଫେରିଆସଲେ ଓଠରୁ ବୋହି ଆସୁଥିବା ରକ୍ତଧାରକୁ ପୋଛି ପକାଉଥିଲେ ହାତରେ ।

ଧୀରେ ଧୀରେ ଆଖି ଖୋଲିଲେ ବ୍ୟାଣ୍ଟିଙ୍ଗ । ଚାହିଁଲେ ଏପଟ ସେପଟ । ପିଠିରେ ସେ ଅନୁଭବ କରୁଥିଲେ ଯନ୍ତ୍ରଣା । ତାଙ୍କ ଚାରିପଟେ ଲାଗିଥିଲା ରୋଗୀମାନଙ୍କର ମେଳା । ସମସ୍ତେ ଯନ୍ତ୍ରଣାରେ ଚିତ୍କାର କରୁଥିଲେ । ଏବେ ଯାଇ ସେ ବୁଝିପାରିଲେ ଯେ ସେ ଅଛନ୍ତି ଡ଼ାକ୍ତରଖାନାରେ । ଯୁଦ୍ଧ କ୍ଷେତ୍ରରେ ବୋମାମାଡ଼ ଯୋଗୁଁ ତାଙ୍କଠାରେ ଲାଗିଛି ଆଘାତ ।

ହଠାତ୍ ସେ ଶୁଣିବାକୁ ପାଇଲେ ଯୁଦ୍ଧ ବିଭାଗରେ କାମ କରୁଥିବା ଡ଼ାକ୍ତରଙ୍କର କଣ୍ଠସ୍ୱର । ଡ଼ାକ୍ତର କହୁଥିଲେ, ''ବ୍ୟାଣ୍ଟିଙ୍ଗ୍ ତମଠାରେ ଅପରେସନ୍ କରିବାକୁ ପଡ଼ିବ ଆମକୁ । ତମ ହାତକୁ କାଟି ଦେବୁ ଆମେ । ନୋହିଲେ ତୁମକୁ ବଞ୍ଚେଇବା ସମ୍ଭବ ହେବନି ।''

''ଅପରେସନ୍ ? ମୋ ହାତକୁ କାଟି ଉଡ଼େଇ ଦେବେ ? ନା, ମୁଁ ତାହା କରିବାକୁ ଦେବିନି । ମୁଁ ବରଂ ମରିଯିବାକୁ ପ୍ରସ୍ତୁତ ଅଛି ।''- ଉତ୍ତର ଦେଲେ ବ୍ୟାଣ୍ଟିଙ୍ଗ ।

ବ୍ୟାଣ୍ଟିଙ୍ଗଙ୍କ ପୂରା ନାଁ ଫ୍ରେଡ଼େରିକ୍ ଗ୍ରାଣ୍ଟ୍ ବ୍ୟାଣ୍ଟିଙ୍ଗ । ଡ଼ାକ୍ତରୀ ପାସ୍ କରି ସାରି ସେ ଯୋଗ ଦେଇଥିଲେ ଦେଶରକ୍ଷା ବିଭାଗର ଜଣେ ସୈନିକ ଭାବରେ । ଯୁଦ୍ଧ କରୁ କରୁ ବୋମାମାଡ଼ରେ କ୍ଷତବିକ୍ଷତ ହେଲେ ସେ । ତାଙ୍କ ହାତରେ ଆଘାତ ଏତେ ଗୁରୁତର ଥିଲା ଯେ ହାତଟିକୁ କାଟି ଉଡ଼େଇଦେବା ନିମନ୍ତେ ଡ଼ାକ୍ତରମାନେ ସ୍ଥିର କରିଥିଲେ ।

ବ୍ୟାଣ୍ଟିଙ୍ଗ୍ ପୁଣି ଅନୁରୋଧ ଜଣେଇଲେ ଡ଼ାକ୍ତରଙ୍କୁ । ସେ କହିଲେ, ''ଦେଖନ୍ତୁ ଡ଼ାକ୍ତର, ମୁଁ ମଧ୍ୟ ଜଣେ ଡ଼ାକ୍ତର । ଜଣେ ଶଲ୍ୟ ବିଶେଷଜ୍ଞ । ଅପରେସନ୍ କରିବା ମୋର ପ୍ରଧାନ କାମ । ଜନସାଧାରଣଙ୍କ ସେବା କରିବା ନିମନ୍ତେ ଈଶ୍ୱର ମୋତେ ଦେଇଛନ୍ତି ଦୁଇଟି ହାତ ଆଉ ଦୁଇଟି ଗୋଡ଼ । ଏହା ଭିତରୁ ମୁଁ କୌଣସି ଗୋଟିକୁ ବି ହରେଇ ପାରିବିନି । ମୋର ଯାହା ହୋଇଯାଉ ପଛେ, ସେଥିକୁ ମୋର ଖାତର ନାହିଁ ।''

ବ୍ୟାଣ୍ଟିଙ୍ଗ୍‌ଙ୍କ ଜିଦ୍ ରହିଲା । ଔଷଧ ଚିକିତ୍ସାରେ ରହି ସେ ଆରୋଗୀ ହୋଇଗଲେ । ତାଙ୍କଠାରେ ଅପରେସନ୍ କରିବାର ଆବଶ୍ୟକତା ପଡ଼ିଲାନି ।

ବ୍ୟାଣ୍ଟିଙ୍ଗ୍ କିଛିଦିନ ଡ଼ାକ୍ତରୀ ଚାକିରୀ କଲେ ଟୋରୋଣ୍ଟୋରେ । କିନ୍ତୁ, ସେଥିରେ ତାଙ୍କର ମନ ମାନିଲାନି । ତେଣୁ, ଚାକିରୀ ଛାଡ଼ିଦେଇ ସେ ଚାଲିଗଲେ ଲଣ୍ଡନ୍ । ଲଣ୍ଡନ୍‌ରେ ଆରମ୍ଭକଲେ ଘରୋଇ ଚିକିତ୍ସା । ହେଲେ, ସେଠାରେ ରୋଗୀଙ୍କୁ ଅପେକ୍ଷା କରି କରି ଆଖିରୁ ପାଣି ମଲା । ଘରୋଇ ଚିକିତ୍ସା ଆରମ୍ଭ କରିବାର ପ୍ରଥମ ମାସରେ ତାଙ୍କ ପାଖକୁ ଆସିଥିଲା ଜଣେ ମାତ୍ର ରୋଗୀ । ପ୍ରଥମ ମାସର ତାଙ୍କ କମେଇ ଥିଲା ଜମା ୪ ଡ଼ଲାର । ତା ପରେ ସେ ଠିକା ଚାକିରୀଟିଏ ଯୋଗାଡ଼ କଲେ ଓଣ୍ଟାରିଓ ମେଡ଼ିକାଲ ସ୍କୁଲ୍‌ରେ । ସେଠାରେ ମେଡ଼ିକାଲ୍ ଛାତ୍ରମାନଙ୍କୁ ପଢ଼େଇବା ଥିଲା ତାଙ୍କର କାମ ।

ଛାତ୍ରମାନଙ୍କୁ ଡ଼ାଇବେଟିସ୍ ବା ମଧୁମେହ ରୋଗ ବିଷୟରେ ପଢ଼େଇବା ନିମନ୍ତେ ଥରେ ତାଙ୍କୁ ଆଦେଶ ଦିଆଗଲା । ତେଣୁ, ଡ଼ାଇବେଟିସ୍ ରୋଗର କାରଣ, ଲକ୍ଷଣ, ଚିକିତ୍ସା ଆଦି ବିଷୟରେ ଜାଣିବା ନିମନ୍ତେ ସେ ବହିପତ୍ର ପଢ଼ିବା ଆରମ୍ଭ କରିଦେଲେ । ତେବେ, ସେତେବେଳେ ଏହିରୋଗର ନିର୍ଦ୍ଦିଷ୍ଟ କାରଣ ଏବଂ ଚିକିତ୍ସା ବିଷୟରେ କିଛି ଜଣା ନ ଥିଲା । ଡ଼ାଇବେଟିସ୍ ରୋଗୀମାନେ ରୋଗ ଭୋଗି ଭୋଗି ଅଳ୍ପ ବୟସରେ ମରିଯାଉଥିଲେ ।

ଡ଼ାଇବେଟିସ୍ ରୋଗ କଥା ଭାବି ଭାବି ସେ ଖାଇବା ପିଇବା ଭୁଲିଗଲେ । ବିଛଣାକୁ ଗଲେ ବି ଶୋଇପାରିଲେନି । ତେଣୁ, ଦିନେ ସକାଳୁ ଉଠି ସେ ପହଞ୍ଚିଗଲେ ପ୍ରଫେସର ମ୍ୟାକ୍‌ଲିଓଡ୍‌ଙ୍କ ପାଖରେ । ତାଙ୍କୁ କହିଲେ, ‘‘ମୋର ଦରକାର ଦଶଟି କୁକୁର । ତାହାଛଡ଼ା ମୋତେ ସାହାଯ୍ୟ କରିବା ନିମନ୍ତେ ଜଣେ ଲୋକ ଦରକାର ।’’

ପ୍ରଫେସର୍ ମ୍ୟାକ୍‌ଲିଓଡ୍ ଉତ୍ତର ଦେଲେ, ‘‘କୁକୁର ଗୁଡ଼ିକ ଉପରେ ଅପରେସନ୍ କରି କିଛି ପରୀକ୍ଷା ନିରୀକ୍ଷା କରିବ କି ? ତାହା ଯଦି ତୁମର ଇଚ୍ଛା, ତେବେ କୁକୁର ଆଉ ସହକାରୀ ଯୋଗାଇଦେବାରେ କିଛି ଅସୁବିଧା ନାହିଁ ।’’

‘‘ନା ସାର୍ । ମୁଁ ଅପରେସନ୍ ଫପରେସନ୍ କିଛି କରିବିନି । ମୋ ମନରେ ବାରମ୍ବାର ଏହି ଧାରଣା ଆସୁଛି ଯେ ଡ଼ାଇବେଟିସ୍ ରୋଗୀଙ୍କ ପାଇଁ ମୁଁ କିଛି କରିପାରିବି । ସେମାନେ ଯେ ଶହ ଶହ ସଂଖ୍ୟାରେ ମରିଯାଉଛନ୍ତି, ତାହା ମୁଁ ରୋକିପାରିବି ।’’

ବ୍ୟାଣ୍ଟିଙ୍ଗ୍‌ଙ୍କ କଥାଶୁଣି ଠୋ ଠୋ ହୋଇ ହସି ପକେଇଲେ ମ୍ୟାକ୍‌ଲିଓଡ୍ । ସେ କହିଲେ, ‘‘ଏଇକଥା ତ ମୁଁ ଶୁଣି ଆସୁଛି ପ୍ରତ୍ୟେକ ବର୍ଷ । ଗ୍ରୀଷ୍ମଛୁଟି ପାଖେଇ ଆସିଲେ

କେତେକ ଯୁବ ଡ଼ାକ୍ତର ମୋ ପାଖରେ ଆସି ପହଞ୍ଚୁଯାଆନ୍ତି । ଡ଼ାଇବେଟିସ୍ ରୋଗକୁ ଭଲ କରିଦେବା ନିମନ୍ତେ ଗବେଷଣା କରିବେ ବୋଲି କହନ୍ତି । କିଛିଦିନ ଧରି କାମ କରନ୍ତି ମଧ୍ୟ । ତା ପରେ ଆଉ ସେମାନଙ୍କର ଦେଖାମିଳେନି ।''

ବ୍ୟାଣ୍ଟିଙ୍ଗ ତ ବଡ଼ ଜିଦିଆ । ସେ ଜୋର୍ ଦେଇ କହିଲେ, ''ମୋର ବିଶ୍ୱାସ ଯେ ଡ଼ାଇବେଟିସ୍ ରୋଗର ଚିକିତ୍ସା ପାଇଁ ମୁଁ କିଛି ନା କିଛି ବାଟ ଖୋଜି ପାଇପାରିବି । କିଛି ନ ହେଲେ ବି ମୁଁ ଏଥିପାଇଁ ଚେଷ୍ଟା କରିଚାଲିବି ନିଶ୍ଚୟ । ଆମ ପେଟ ଭିତରେ ଅଗ୍ନ୍ୟାଶୟ ବୋଲି ଯେଉଁ ଅଙ୍ଗଟି ଅଛି, ସେଇଠି ଲୁଚି ରହିଛି ଚିକିତ୍ସାର ଉପାୟ । ତେଣୁ ମୁଁ ଅଗ୍ନ୍ୟାଶୟ ଉପରେ ଗବେଷଣା କରିବା ପାଇଁ ମନ ସ୍ଥିର କରିଛି ।''

''ତମେ ତ ନୂଆକଥା କିଛି କହୁନ । ପୃଥିବୀର ବହୁ ବଡ଼ ବଡ଼ ବୈଜ୍ଞାନିକ ତ ବର୍ଷ ବର୍ଷ ଧରି ଅଗ୍ନ୍ୟାଶୟ ଉପରେ ଗବେଷଣା ଚଳେଇଛନ୍ତି । ହେଲେ, କି ଲାଭ ମିଳିଛି ସେଥିରୁ ? ବରଂ ରୋଗୀକୁ ଉପାସ ରହିବା ନିମନ୍ତେ ପରାମର୍ଶ ଦେଇ ରୋଗୀମାନଙ୍କୁ ଠେଲି ଦେଇଛନ୍ତି ମରଣ ମୁହଁକୁ ।''

''ମୁଁ କିନ୍ତୁ ବଡ଼ ଜିଦ୍‌ଖୋର୍ ସାର୍ ।''

''ଆଚ୍ଛା, ଅଗ୍ନାଶୟ ଉପରେ ପରୀକ୍ଷା ନିରୀକ୍ଷା କରିବା ବିଷୟରେ ତମେ କିଛି ଜାଣିଛ ? ଆଗରୁ କରିଛ କେବେ ଏ ସବୁ କାମ ?''

''ନା, ସାର୍ । ସେଇଥିପାଇଁ ତ ମୁଁ ଆପଣଙ୍କଠାରୁ ସାହାଯ୍ୟ ଚାହୁଁଛି ।''

''ଠିକ୍ ଅଛି ତେବେ । ତମେ ଯେମିତି ଚାହୁଁଛ, ସେମିତି ହବ । ଗବେଷଣା ଆରମ୍ଭ କରିବା ପାଇଁ ବ୍ୟବସ୍ଥା କର ।''



# ବ୍ୟାଣ୍ଟିଙ୍ଗ୍ ଏବଂ ଇନ୍‌ସୁଲିନ୍ ଆବିଷ୍କାର

ଡ଼ାଇବେଟିସ୍ ରୋଗର ଉପଶମ ପାଇଁ କାରଣ ଖୋଜିବା ନିମନ୍ତେ ବ୍ୟାଣ୍ଟିଙ୍ଗଙ୍କର ନିଷ୍ପତ୍ତି ପହଞ୍ଚିଲା ତାଙ୍କ ବନ୍ଧୁମାନଙ୍କ କାନରେ । ସେମାନେ କହିଲେ, ''ବ୍ୟାଣ୍ଟିଙ୍ଗ୍, ତୁ ବୋକାଟାଏ କିରେ ? ଡ଼ାକ୍ତର ହିସାବରେ ଅପରେସନ୍ କାମ ଛାଡ଼ି କୁକୁର ଉପରେ କରିବୁ ଗବେଷଣା ?''

ବ୍ୟାଣ୍ଟିଙ୍ଗ୍ ସେମାନଙ୍କ କଥା ନୀରବରେ ଶୁଣିଗଲେ । ଉଁ କି ଚୁଁ କିଛି ଉତ୍ତର ଦେଲେନି । ନିଜ ପାଖରେ ଅପରେସନ୍ କରିବା ପାଇଁ ଯେଉଁ ଯନ୍ତ୍ରପାତିସବୁ ଥିଲା ତାକୁ ବିକି ଦେଲେ । ନିଜ ଟେବୁଲ୍ ଚଉକି ବି ବିକିପକେଇଲେ । ଗବେଷଣା କାମ ତ ସପ୍ତାହେ ଦି' ସପ୍ତାହ ଭିତରେ ଶେଷ ହୋଇଯିବନି । ଏଥିପାଇଁ ବର୍ଷ ବର୍ଷ ମଧ୍ୟ ଲାଗିଯାଇପାରେ । ତାହାଛଡ଼ା, ତାଙ୍କୁ ଆଉ ଦରମା ମିଳିବନି ମାସକୁ ମାସ ।

ବ୍ୟାଣ୍ଟିଙ୍ଗଙ୍କୁ ସାହାଯ୍ୟ କରିବା ନିମନ୍ତେ ଆସି ଯୋଗଦେଲେ ଚାର୍ଲସ୍ ହର୍‌ବର୍ଟ୍ ବେଷ୍ଟ । ବେଷ୍ଟ ସେତେବେଳକୁ ଜଣେ ଡ଼ାକ୍ତରୀ ଛାତ୍ର । ବୟସରେ କିଶୋର । କିନ୍ତୁ ଗବେଷଣା କରିବାରେ ପ୍ରବଳ ଆଗ୍ରହ ଥାଏ ତାଙ୍କର ।

କଥା ହେଲା ଯେ ବ୍ୟାଣ୍ଟିଙ୍ଗ୍ କୁକୁର ଉପରେ ଅପରେସନ୍ କରିବେ । ଅଗ୍ନାଶୟ ଉପରେ ପରୀକ୍ଷା ନିରୀକ୍ଷା ଚଳେଇବେ । ବେଷ୍ଟ ସଂଗ୍ରହ କରିବେ କୁକୁରର ରକ୍ତ ଆଉ ପରିସ୍ରା । ସେହି ରକ୍ତ ଆଉ ପରିସ୍ରାରେ କେତେ ଗ୍ଲୁକୋଜ୍ ଅଛି ତାହା ମାପିକରି ଜଣେଇବେ ବ୍ୟାଣ୍ଟିଙ୍ଗଙ୍କୁ । କାରଣ, ଡ଼ାଇବେଟିସ୍ ରୋଗ ହେଲେ ରୋଗୀର ରକ୍ତରେ ଗ୍ଲୁକୋଜ୍‌ର ପରିମାଣ ବଢ଼ିଯାଏ । ତା ସାଂଗକୁ ପରିସ୍ରାରେ ମଧ୍ୟ ବାହାରିଯାଏ ଗ୍ଲୁକୋଜ ।

ବ୍ୟାଣ୍ଟିଙ୍ଗ୍ ଆଉ ବେଷ୍ଟଙ୍କର ଗବେଷଣା ଆରମ୍ଭ ହେଲା । ଚାଲିଲା ପୂରା ଦମ୍‌ରେ । ବ୍ୟାଣ୍ଟିଙ୍ଗ୍ କୁକୁରର ପେଟ ଖୋଲି ଅଗ୍ନାଶୟର ନଳୀକୁ ବାନ୍ଧି ଦିଅନ୍ତି । କିଛିଦିନ ପରେ ଅଗ୍ନାଶୟଟି ସରୁ ଆଉ ଛୋଟ ହୋଇଆସେ । ତାକୁ କାଟି ନେଇ ସେଥିରୁ ବାହାର କରନ୍ତି ରସ । ସେଇ ରସକୁ ସାଇତି ରଖନ୍ତି ସେ ।

ଗବେଷଣା ଚାଲିଥାଏ । ଚାଲିଥାଏ କୁକୁରମରା । ଦଶଟାଯାକ କୁକୁର ଗବେଷଣାରେ ପ୍ରାଣ ହରେଇଲା ପରେ ଦରକାର ପଡ଼ିଲା ଆହୁରି ଅଧିକ କୁକୁର ।

ଗୋଟିକ ପରେ ଗୋଟିଏ କରି ୯୧ଟି କୁକୁର ସରିଗଲା । ତଥାପି କିଛି ସୂତ୍ର ମିଳିଲାନି । ଏବେ ପଡ଼ିଲା ୯୨ ତମ କୁକୁରର ପାଳି । ତା ପେଟରୁ ଅଗ୍ନାଶୟ ବାହାର କରିନେଲେ ବ୍ୟାଣ୍ଟିଙ୍ଗ୍ । ଅଗ୍ନ୍ୟାଶୟ ବାହାର କରିନେଲା ପରେ କୁକୁରକୁ ହେଲା ଡ଼ାଇବେଟିସ୍ ରୋଗ । ତାର ଏବେ ମର ମର ଅବସ୍ଥା । ଉଠିବାକୁ ବି ବଳ ପାଉ ନ ଥାଏ ତାର । ଦରମଲା ହୋଇ ପଡ଼ି ରହିଥାଏ ସେ । ତା ରକ୍ତରେ ବଢ଼ିଯାଇଥାଏ ଗ୍ଲୁକୋଜ୍‌ର ପରିମାଣ । ପରିସ୍ରାରେ ବି ବାହାରି ଯାଉଥାଏ ଗ୍ଲୁକୋଜ୍ ।

ଆଗରୁ ତ କୁକୁର ମାରି ଅଗ୍ନ୍ୟାଶୟ ରସ ସାଇତି ରଖିଥିଲେ ବ୍ୟାଣ୍ଟିଙ୍ଗ୍ । ସେହି ରସକୁ ନେଇ ଡ଼ାଇବେଟିସ୍ ରୋଗ ଭୋଗୁଥିବା କୁକୁରଠାରେ ଇଂଜେକ୍‌ସନ୍ ଦେଇଦେଲେ ସେ । ବଡ଼ ବିଚିତ୍ର ଘଟଣା ଘଟିଲା । କିଛି ଘଣ୍ଟା ପରେ କୁକୁରଟି ଆପେ ଆପେ ଉଠି ଠିଆ ହେଲା । ଭୁକିଲା । ଲାଞ୍ଜ ହଲେଇଲା । ଧିରେ ଧିରେ ଚଲାବୁଲା କରିବାକୁ ଆରମ୍ଭ କଲା । ବେଷ୍ଟ୍ ତାର ରକ୍ତ ଆଉ ପରିସ୍ରା ନେଇ ପରୀକ୍ଷା କଲେ । ରକ୍ତରେ ଗ୍ଲୁକୋଜ୍‌ର ମାତ୍ରା କମିଯାଇଥିଲା । ପରିସ୍ରାରେ ନ ଥିଲା ଗ୍ଲୁକୋଜ୍‌ର ନାମଗନ୍ଧ । ଏଥିରୁ ପ୍ରମାଣ ମିଳିଲା ଯେ କୁକୁରଠାରେ ଅଗ୍ନାଶୟ-ରସ ଇଞ୍ଜେକ୍‌ସନ୍ ଦେଇଦେବାରୁ ଉପଶମ ହୋଇଗଲା ତାର ଡ଼ାଇବେଟିସ୍ ରୋଗ ।

ଏଥିରେ ଖୁବ୍ ଖୁସୀ ହୋଇଗଲେ ବ୍ୟାଣ୍ଟିଙ୍ଗ । କହିବାକୁ ଗଲେ, ଏହି ସଫଳତାରେ ଆତ୍ମହରା ହୋଇ ଉଠିଲେ ସେ । ବ୍ୟାଣ୍ଟିଙ୍ଗ୍ ଆଉ ବେଷ୍ଟ୍ ଅଗ୍ନ୍ୟାଶୟରସର ନାଁ ରଖିଥିଲେ 'ଆଇଲେଟିନ୍' ବୋଲି । ସେମାନେ ଧରି ନେଇଥିଲେ ଯେ ତାଙ୍କର ପରୀକ୍ଷା ଶେଷ ହୋଇଗଲା । କିନ୍ତୁ, ସେମାନଙ୍କର ଆନନ୍ଦ ବେଶୀଦିନ ରହିଲାନାହିଁ । ମାତ୍ର ୨୦ ଦିନ ଭିତରେ କୁକୁରର ରକ୍ତରେ ଗ୍ଲୁକୋଜ୍ ଖୁବ୍ ବଢ଼ିଗଲା । ସେ ପହଞ୍ଚିଗଲା ମରିବା ଅବସ୍ଥାରେ ।

ପୁଣି ଆରମ୍ଭ ହୋଇଗଲା ବ୍ୟାଣ୍ଟିଙ୍ଗ୍‌ଙ୍କର ମୁଣ୍ଡବଥା । ସେ ଭାବିଲେ ଯେ ବୋଧହୁଏ କୁକୁର ଅଗ୍ନ୍ୟାଶୟରୁ ବେଶୀ ପରିମାଣର 'ଆଇଲେଟିନ୍' ମିଳିପାରୁନାହିଁ । ତେଣୁ ସେ ଆଇଲେଟିନ୍ ସଂଗ୍ରହ କଲେ ମାଂସ ପାଇଁ ବଳି ପଡୁଥିବା ଗୋରୁଗାଈଙ୍କର ଅଗ୍ନ୍ୟାଶୟରୁ । ଏହାକୁ ବ୍ୟବହାର କରି ବଞ୍ଚେଇ ରଖିଲେ ଡ଼ାଇବେଟିସ୍ ଭୋଗୁଥିବା କୁକୁର ଗୁଡ଼ିକୁ । କିନ୍ତୁ କୁକୁରର ଡ଼ାଇବେଟିସ୍ ଉପଶମ ହେଲେ ମଣିଷ-ରୋଗୀଙ୍କର କି ଲାଭ ? 'ଆଇଲେଟିନ୍'କୁ ଡ଼ାଇବେଟିସ୍ ରୋଗୀଙ୍କୁ ଇଞ୍ଜେକ୍‌ସନ୍ ଦେଇଦେଲେ ସେମାନଙ୍କୁ ଉପକାର ମିଳିବ କି ନା, ତାହା ଥିଲା ବ୍ୟାଣ୍ଟିଙ୍ଗଙ୍କର ଚିନ୍ତାର ବିଷୟ ।

ଦିନକର କଥା । ବ୍ୟାଣ୍ଟିଙ୍ଗ୍ ଚାଲି ଚାଲି, ଯାଉଥାନ୍ତି ରାସ୍ତାରେ । ରାସ୍ତାରେ ଦୈବାତ୍ ଦେଖା ହୋଇଗଲା ତାଙ୍କ ପିଲାଦିନର ସାଂଗ ଜୋ ଗିଲ୍‌ଖ୍ରୀଷ୍ଟଙ୍କ ସାଙ୍ଗରେ । ଦୁଇ ବନ୍ଧୁ ମଜାଗପରେ ମାତିଗଲେ । କିନ୍ତୁ, ଜୋ ବହୁତ ଝଡ଼ି ଯାଇଥିଲେ । ସେ ଦେଖାଯାଉଥିଲେ ଶେତାଳିଆ । ପଚାରିବାରୁ ସେ କହିଲେ ଯେ ଡ଼ାଇବେଟିସ୍ ହିଁ ତାଙ୍କୁ ଏତେ ସରି କରିପକେଇଛି ।

ବ୍ୟାଣ୍ଟିଙ୍ଗ୍ ତାଙ୍କୁ ନେଇଗଲେ ନିଜ ଗବେଷଣାଗାରକୁ । ଜୋ'ଙ୍କୁ ଦେଇଦେଲେ ଆଇଲେଟିନ୍ ଇଂଜେକ୍‌ସନ୍ । ବେଷ୍ଟଙ୍କୁ କେତେକ ପରାମର୍ଶ ଦେଇ ବାହାରିଗଲେ ନିଜ କାମରେ । ହଠାତ୍ ସେ ଟେଲିଫୋନ୍ ପାଇଲେ ଜୋ'ଙ୍କଠାରୁ । ଜୋ' ଜଣେଇଲେ, "ତୁମେ ଚାଲିଯିବା ପରେ ମୋର ଅବସ୍ଥା ସୁଧୁରି ଗଲା । ମୋତେ ଭୋକ ହେଲା । ମୋତେ ଖୁବ୍ ଭଲ ଲାଗିଲା । ଏବେ କିନ୍ତୁ ପୁଣି ଆଗ ବେଳର ଲକ୍ଷଣ ପ୍ରକାଶ ପାଇଲାଣି । ଆଉ ଥରେ ଆଇଲେଟିନ୍ ଇଂଜେକ୍‌ସନ୍ ନେବା ପାଇଁ ମୁଁ ତମ ପାଖରେ ପହଞ୍ଚିବି । ଆଇଲେଟିନ୍ ତ ମୋର ଜୀବନ ରଖିଦେଲା । କହିବାକୁ ଗଲେ ତାହା ତ ଡ଼ାଇବେଟିସ୍ ରୋଗୀଙ୍କ ପାଇଁ 'ମୃତ ସଞ୍ଜିବନୀ' ଭଳି !"

ବ୍ୟାଣ୍ଟିଙ୍ଗ୍ ଆଉ ବେଷ୍ଟଙ୍କ ସଫଳତାର କାହାଣୀ ପହଞ୍ଚିଗଲା ମ୍ୟାକ୍‌ଲିଓଡ୍‌ଙ୍କ ପାଖରେ । 'ଆଇଲେଟିନ୍'ର ନାଁ ବଦଳେଇ ସେ ତାର ନାଁ ରଖିଲେ 'ଇନ୍‌ସୁଲିନ୍' । ପ୍ରଫେସର୍ ନିଜ ଆଡୁ ଏ ବିଷୟ ଘୋଷଣା କଲେ ଏବଂ ଇନ୍‌ସୁଲିନ୍‌ର ଆବିଷ୍କାର ପାଇଁ ବାହାବା ମାରିନେଲେ । ଇନସୁଲିନ୍ ଆବିଷ୍କାରର ସବୁଯାକ ସମ୍ମାନ ମ୍ୟାକ୍‌ଲିଓଡ୍ ମାରିନେବାରେ ବ୍ୟାଣ୍ଟିଙ୍ଗ୍ ବିଶେଷ ମର୍ମାହତ ହେଲେ ନାହିଁ ।

ସେ ଯାହାହେଉ, ଇନ୍‌ସୁଲିନ୍ ଆବିଷ୍କାର ପାଇଁ ବ୍ୟାଣ୍ଟିଙ୍ଗ୍ ଏବଂ ମ୍ୟାକ୍‌ଲିଓଡ୍‌ଙ୍କୁ ୧୯୨୨ ମସିହାରେ ଚିକିତ୍ସା ବିଜ୍ଞାନ ନୋବେଲ୍ ପୁରସ୍କାର ମିଳିଲା । ଏହି ପୁରସ୍କାରରେ ବେଷ୍ଟ ଭାଗୀଦାର ନ ଥିଲେ । କିନ୍ତୁ, ପୁରସ୍କାର ବାବଦକୁ ବ୍ୟାଣ୍ଟିଙ୍ଗଙ୍କୁ ଯେଉଁ ଅର୍ଥ ମିଳିଲା, ତାର ଅଧା ଅର୍ଥ ସେ ଦେଇଦେଲେ ବେଷ୍ଟଙ୍କୁ ।

ପରେ ବ୍ୟାଣ୍ଟିଙ୍ଗ୍ ପୁଣି ଥରେ ସୈନ୍ୟବିଭାଗରେ ଭର୍ତ୍ତି ହୋଇଥିଲେ । ସେତିକିବେଳେ ସେ ଯେଉଁ ଯୁଦ୍ଧ ବିମାନରେ ଯାଉଥିଲେ, ତାହା ଦୁର୍ଘଟଣାରେ ପଡ଼ିଲା । ସେହି ବିମାନ ଦୁର୍ଘଟଣାରେ ବ୍ୟାଣ୍ଟିଙ୍ଗ୍ ଅକାଳ ମୃତ୍ୟୁ ବରଣ କଲେ । ମୃତ୍ୟୁ ବେଳକୁ ତାଙ୍କୁ ହୋଇଥିଲା ଜମା ୫୦ ବର୍ଷ ।

ଡ଼ାଇବେଟିସ୍ ରୋଗର ଚିକିତ୍ସା ପାଇଁ ଏବେ ନୂଆ ନୂଆ ଔଷଧ ମାନ ବାହାରିଛି । ତଥାପି ଏପରି କେତେକ ରୋଗୀ ଅଛନ୍ତି, ଯେଉଁମାନେ ଇନ୍‌ସୁଲିନ୍ ବ୍ୟତୀତ ଅନ୍ୟ ଚିକିତ୍ସାରେ କୌଣସି ଉପକାର ପାଆନ୍ତି ନାହିଁ ।

ଇନ୍‌ସୁଲିନ୍‌କୁ ପାଟିବାଟେ ଖିଆ ଯାଏନାହିଁ । ଏହାକୁ କେବଳ ଇଂଜେକ୍‌ସନ୍ ଆକାରରେ ଦିଆଯାଇଥାଏ । ରକ୍ତର ଗ୍ଲୁକୋଜ୍‌ର ପରିମାଣକୁ କମେଇଦେବା ହେଲା ଇନ୍‌ସୁଲିନ୍‌ର ପ୍ରଧାନ କାମ ।

ଇନ୍‌ସୁଲିନ୍ ଆବିଷ୍କାର ଦ୍ୱାରା ଡ଼ାଇବେଟିସ୍ ରୋଗୀଙ୍କର ଜୀବନ ରକ୍ଷା କରିପାରିଥିବାରୁ ଫ୍ରେଡ଼େରିକ୍ ଗ୍ରାଣ୍ଟ୍ ବ୍ୟାଣ୍ଟିଙ୍ଗ୍ ଆମ ସମସ୍ତଙ୍କର ନମସ୍ୟ ।

ବ୍ୟାଣ୍ଟିଙ୍ଗ୍‌ଙ୍କର ଜନ୍ମଦିବସ ନଭେମ୍ବର ୧୪ ତାରିଖକୁ 'ବିଶ୍ୱ ମଧୁମେହ ଦିବସ' ରୂପେ ପାଳନ କରାଯାଇଥାଏ ।



# ଶାନ୍ତିପ୍ରେମୀ ପରମାଣୁ ବୈଜ୍ଞାନିକ

ଆମ୍ଭମାନଙ୍କର ଧାରଣା ଯେ ଜୀବନରେ ଉନ୍ନତି କରିବାକୁ ହେଲେ କଲେଜ୍ ପଢ଼ା ନିହାତି ଦରକାର । କିନ୍ତୁ, ପୃଥିବୀର ଅନେକ ନାମଜାଦା ବ୍ୟକ୍ତି ଏହି ଧାରଣାକୁ ଭୁଲ୍ ବୋଲି ପ୍ରମାଣ କରି ଦେଇଛନ୍ତି । ଏହିଭଳି ଜଣେ ବ୍ୟକ୍ତି ହେଉଛନ୍ତି ଜୋସେଫ୍ ରୋଟ୍‌ବ୍ଲାଟ୍ ।

ରୋଟ୍‌ବ୍ଲାଟ୍ ଜନ୍ମ ହୋଇଥିଲେ ପୋଲାଣ୍ଡରେ । ତାଙ୍କୁ ଯେତେବେଳେ ଜମା ଛଅ ବର୍ଷ ବୟସ, ସେତିକିବେଳେ ଲାଗିଗଲା ପ୍ରଥମ ବିଶ୍ୱଯୁଦ୍ଧ । ଯୁଦ୍ଧ ଲାଗିଯିବାରୁ ସେମାନଙ୍କର ପରିବାରରେ ଦୁଃଖର ସୀମା ରହିଲାନି । ଆଗରୁ ସେମାନେ ଖୁବ୍ ଭଲ ଚଳୁଥିଲେ । ଘରେ ଅଭାବ ବୋଲି କିଛି ନ ଥିଲା । କିନ୍ତୁ, ଯୁଦ୍ଧ ଲାଗିଯିବା ଫଳରେ ସେମାନେ ହଠାତ୍ ଗରିବ ହୋଇଗଲେ । ଖାଇବାକୁ ପାଇଲେନି । ଚିରାଫଟା ପୋଷାକ ପିନ୍ଧିବାକୁ ବାଧ ହେଲେ । ଗୋଟିକ ପରେ ଗୋଟିଏ କରି ସମସ୍ତେ ରୋଗରେ ସଢ଼ିଲେ । ଏ ସବୁ ଅସୁବିଧା ଭିତରେ ରହି ରୋଟ୍‌ବ୍ଲାଟ୍ କିନ୍ତୁ ସ୍ୱପ୍ନ ଦେଖୁଥିଲେ ଯେ ବିଜ୍ଞାନ ହିଁ ଯୁଦ୍ଧ ବନ୍ଦ କରିଦେବ ଏବଂ ବିଜ୍ଞାନ ହିଁ ଜୀବନର ସମସ୍ତ ଦୁଃଖ ଦୁର୍ଦ୍ଦଶା ଦୂର କରିଦେବ ।

ତେବେ, ତାଙ୍କର ଏହି ସ୍ୱପ୍ନ ସଫଳ ହେବ କିପରି ? ଘରେ ତ ଟଙ୍କା ପଇସା ନାହିଁ । ଟଙ୍କା ପଇସା ନ ଥିବାରୁ କଲେଜ୍ କି ବିଶ୍ୱବିଦ୍ୟାଳୟରେ ପଢ଼ିବାର ପ୍ରଶ୍ନ ଉଠୁଛି ଅବା କୁଆଡୁ ? ତାହାଛଡ଼ା, ପେଟ ପୋଷିବାପାଇଁ ନାନା ଆଡ୍ରେ ବୁଲି କାମଧନ୍ଦା କରିବାକୁ ପଡୁଥାଏ ତାଙ୍କୁ । କଅଣ ପଢ଼ିଛନ୍ତି ବା କେଉଁ ଶ୍ରେଣୀଯାଏଁ ପଢ଼ିଛନ୍ତି, ତାର ପ୍ରମାଣ ଦେଖେଇବାକୁ ତାଙ୍କ ପାଖରେ ସାର୍ଟିଫିକେଟ୍ ବି ନ ଥାଏ । ହେଲେ, ସେ ଏଥିରେ ଦବି ଗଲେନି । କିଛି ପଇସାପତ୍ର ଯୋଗାଡ଼ କରି ସେ ପଦାର୍ଥ ବିଜ୍ଞାନ ବିଷୟରେ କେତୋଟି ପଢ଼ାବହି କିଣି ପକେଇଲେ । ନିଜେ ନିଜେ ସେଗୁଡ଼ିକୁ ପଢ଼ିବା ଆରମ୍ଭ କରିଦେଲେ ।

୧୯୨୮ ମସିହାରେ ସେ ଜାଣିବାକୁ ପାଇଲେ ଯେ ପୋଲାଣ୍ଡର ୱାର୍ସଠାରେ ଖୋଲିଛି ଏକ ମୁକ୍ତ ବିଶ୍ୱବିଦ୍ୟାଳୟ । ସେଥିରେ ନାମ ଲେଖେଇବା ପାଇଁ ସ୍କୁଲ୍ ପାସ ସାର୍ଟିଫିକେଟ୍ ଦରକାର ନାହିଁ । ରୋଟ୍‌ବ୍ଲାଟ୍ ଏହି ସୁଯୋଗରୁ ଫାଇଦା ଉଠେଇଲେ । ସେଥିରେ ନାଁ ଲେଖେଇ ସେ ପଦାର୍ଥ ବିଜ୍ଞାନ ପଢ଼ିଲେ ଏବଂ ୧୯୩୨ ମସିହାରେ ପଢ଼ା ସାରିଦେଲେ । ଏହା ଫଳରେ ପଦାର୍ଥ ବିଜ୍ଞାନ ବିଭାଗରେ ତାଙ୍କୁ ଛୋଟିଆ ଚାକିରୀଟିଏ ମିଳିଗଲା । ସେଇଠି ରହି ସେ ଆରମ୍ଭ କଲେ ବୈଜ୍ଞାନିକ ଗବେଷଣା ।

୧୯୩୨ ମସିହା ଥିଲା ପଦାର୍ଥ ବିଜ୍ଞାନର ସୁବର୍ଣ୍ଣ ବର୍ଷ । ଚାରୋଟି ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ହୋଇପାରିଥିଲା ସେହି ବର୍ଷଟିରେ । ରୋଟ୍‌ବ୍ଲାଟ୍ ନିଉକ୍ଲିଆର୍ ପଦାର୍ଥ ବିଜ୍ଞାନ ଉପରେ ଗବେଷଣା ଚଳେଇଲେ । ତାଙ୍କ ଗବେଷଣାଗାରରେ ବିଶେଷ ଯନ୍ତ୍ରପାତି ନ ଥିଲା । ଯନ୍ତ୍ରପାତି କିଣିବା ପାଇଁ ତାଙ୍କ ପାଖରେ ପଇସା ମଧ ନ ଥିଲା । ସେତେବେଳେ ରୋମ୍‌ରେ ଏହି ଶାଖାରେ ଗବେଷଣା ଚଳେଇଥାଆନ୍ତି ଖ୍ୟାତନାମା ପଦାର୍ଥ ବିଜ୍ଞାନୀ ଏନ୍‌ରିକୋ ଫେର୍‌ମୀ । ଫେର୍‌ମୀଙ୍କ ଗବେଷଣାଗାରର ଚାରିଆଡ଼େ ନାଁ ଡ଼ାକ୍ । ଗବେଷଣା ପାଇଁ ଫେର୍‌ମୀଙ୍କ ପାଖରେ ୧୦୦୦ ମିଲିଗ୍ରାମ୍ ପରିମାଣର ରେଡ଼ିଅମ୍ ଥିବା ବେଳେ ରୋଟ୍‌ବ୍ଲାଟ୍‌ଙ୍କ ପାଖରେ ଥାଏ ମାତ୍ର ୩୦ ମିଲିଗ୍ରାମ୍ ରେଡ଼ିଅମ୍ । ହେଲେ, ସେ ଏଥିରେ ଦବିଗଲେନି । ୧୯୩୮ ମସିହା ଫେବୃଆରୀ ମାସରେ ନିଜ ଗବେଷଣାରେ ରୋଟ୍‌ବ୍ଲାଟ୍‌ଙ୍କୁ ସଫଳତା ମିଳିଲା । ଏହି ସଫଳତା ଯୋଗୁଁ ପରମାଣୁ ବୋମା ତିଆରି କରିବାର ପଥ ସରଳ ହୋଇଗଲା ।

୧୯୩୯ ମସିହା ନଭେମ୍ବର ମାସରେ ରୋଟ୍‌ବ୍ଲାଟ୍ ଚାଲିଗଲେ ବ୍ରିଟେନ୍‌ର ଲିଭର୍‌ପୁଲ୍‌କୁ । ସେଠାରେ ଜେମ୍‌ସ୍ ଚାଡ୍‌ଉଇକ୍‌ଙ୍କ ସହ ମିଶି ଗବେଷଣା ଚଳେଇଲେ । ନିଉଟ୍ରନ୍ ଆବିଷ୍କାର କରିଥିବା ଯୋଗୁଁ ଚାଡ୍‌ଉଇକ୍ ୧୯୩୫ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥାନ୍ତି ।

ତେବେ, ହିଟଲରଙ୍କୁ ପାନେ ଦେବାପାଇଁ ଆମେରିକା ପରମାଣୁ ବୋମା ତିଆରି ଆରମ୍ଭ କରିଦେଇଥାଏ । ଏହିକାମରେ ସାହାଯ୍ୟ କରିବା ନିମନ୍ତେ ରୋଟ୍‌ବ୍ଲାଟ୍‌ଙ୍କୁ ନିମନ୍ତ୍ରଣ କରାଗଲା । ରୋଟ୍‌ବ୍ଲାଟ୍ ଆମେରିକା ଯାଇ ବୋମା ତିଆରି କାମରେ ଯୋଗଦେଲେ । ଏତିକିବେଳେ ଖବର ମିଳିଲା ଯେ ଜର୍ମାନୀ ପରମାଣୁବୋମା ତିଆରି କରିବାରୁ ଓହରି ଯାଇଛି । ଏହା ଶୁଣିବାମାତ୍ରେ ରୋଟ୍‌ବ୍ଲାଟ୍ ନିଜ କାର୍ଯ୍ୟରୁ ଇସ୍ତଫା ଦେଇ ବାହୁଡ଼ି ଆସିଲେ ଲିଭର୍‌ପୁଲ୍‌କୁ । ସେତେବେଳେ ଆମେରିକା ତାଙ୍କୁ 'ଜର୍ମାନୀର ଗୁପ୍ତଚର' କହି ତାଙ୍କ ନାଁରେ ଅପବାଦ ରଟିଥିଲା ।

୧୯୪୫ ମସିହା ଅଗଷ୍ଟ ୬ ତାରିଖରେ ଆମେରିକା ଜାପାନ୍‌ର ହିରୋସୀମା ସହର ଉପରେ ପକେଇଲା ପରମାଣୁ ବୋମା । ତାର ତିନି ଦିନ ପରେ ପରମାଣୁ ବୋମା ପକେଇଲା ନାଗାସାକି ସହର ଉପରେ । ବୋମା ପଡ଼ିବା ଯୋଗୁଁ ଲକ୍ଷାଧିକ ଲୋକ ମୃତ୍ୟୁମୁଖରେ ପଡ଼ିଲେ । ଲକ୍ଷାଧିକ ଲୋକ ପରମାଣୁ ବୋମାର କ୍ଷତିକାରୀ ପ୍ରଭାବ ଭୋଗିବାକୁ ବାଧ ହେଲେ ।

କିନ୍ତୁ, ବିଜ୍ଞାନର ଏହି ଅପବ୍ୟବହାର ରୋଟ୍‌ବ୍ଲାଟ୍‌ଙ୍କ ମନରେ ଗଭୀର ଦୁଃଖ ଦେଲା । ତେଣୁ, ପରମାଣୁର ଶାନ୍ତିପୂର୍ଣ୍ଣ ବ୍ୟବହାର ଦିଗରେ ସେ ଗବେଷଣା ଆରମ୍ଭ

କଲେ । ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ରୋଗ ନିର୍ଣ୍ଣୟ ଏବଂ ରୋଗର ଚିକିତ୍ସା ପାଇଁ କିପରି ପରମାଣୁକୁ କାମରେ ଲଗାଯାଇ ପାରିବ, ସେହି ବିଷୟରେ ଦୀର୍ଘ ୩୦ ବର୍ଷ ଧରି ଗବେଷଣା ଚଳେଇଚାଲିଲେ ସେ ।

ପରମାଣୁ ବୋମାର ଭୟାବହତା ଦେଖି ତାଙ୍କ ମନରେ ଛନକା ପଶିଯାଇଥିଲା । କ୍ରୋଧରେ ଫାଟି ପଡୁଥିଲେ ସେ । ମଣିଷ ସଭ୍ୟତାର ଭବିଷ୍ୟତ କଥା ଭାବି ସେ ଖୁବ୍ ଭୟଭୀତ ହୋଇପଡ଼ିଥିଲେ ମଧ୍ୟ ।

ତେଣୁ, ଆଇନ୍‌ଷ୍ଟାଇନ୍ ଏବଂ ବର୍ଟାଣ୍ଡ ରସେଲ୍‌ଙ୍କ ସହ ମିଶି ପୃଥିବୀରେ ଶାନ୍ତି ସ୍ଥାପନ ପାଇଁ ଉଦ୍ୟମ ଆରମ୍ଭ କରିଦେଲେ ରୋଟ୍‌ବ୍ଲାଟ୍ । ସେମାନଙ୍କ ସହ ଅନ୍ୟ ବୈଜ୍ଞାନିକମାନେ ମଧ୍ୟ ଯୋଗଦେଲେ । ନୋଭାସ୍କୋଟିଆର ପୁଗ୍‌ୱାସ୍ ନାମକ ଗୋଟିଏ ଛୋଟିଆ ଗାଁରେ ସେମାନଙ୍କର ଆଲୋଚନା ସଭା ବସିଲା । ବିଜ୍ଞାନକୁ ପୃଥିବୀବାସୀଙ୍କ ହିତପାଇଁ ବ୍ୟବହାର କରିବା ନିମନ୍ତେ ସେମାନେ ନିଷ୍ପତ୍ତି ନେଲେ । ପରମାଣୁ ବୋମାର ବିଲୋପ ସାଧନ କରି ମଣିଷ ଜାତିକୁ ରକ୍ଷା କରିବା ପାଇଁ ସେହି ପୁଗ୍‌ୱାସ୍ ସମ୍ମିଳନୀରେ ପ୍ରସ୍ତାବ ଗ୍ରହଣ କରାଗଲା ।

ମଣିଷ ଜାତିର ମଙ୍ଗଳ ପାଇଁ ଆନ୍ତରିକ ଉଦ୍ୟମ କରୁଥିବା ଯୋଗୁଁ ଜୋସେଫ୍ ରୋଟ୍‌ବ୍ଲାଟ୍ ଏବଂ ପୁଗ୍‌ୱାସ୍ ସମ୍ମିଳନୀକୁ ମିଳିଲା ୧୯୯୫ ମସିହାର ଶାନ୍ତିପାଇଁ ନୋବେଲ୍ ପୁରସ୍କାର । ରୋଟ୍‌ବ୍ଲାଟ୍ ଜୀବନରେ ବିବାହ କରି ନ ଥିଲେ । ନୋବେଲ୍ ପୁରସ୍କାର ପାଇବା ବେଳକୁ ତାଙ୍କୁ ହୋଇଥିଲା ୮୭ ବର୍ଷ ।

ନୋବେଲ୍ ପୁରସ୍କାର ଗ୍ରହଣ କରି ରୋଟ୍‌ବ୍ଲାଟ୍ କହିଥିଲେ । "ଅଳ୍ପ କେଇଜଣ ବୈଜ୍ଞାନିକ ପୃଥିବୀରେ ଶାନ୍ତି ପ୍ରତିଷ୍ଠାପାଇଁ ୧୯୫୫ ମସିହାଠାରୁ ଆନ୍ତରିକ ଚେଷ୍ଟା ଚଳେଇ ଆସୁଛନ୍ତି । ଏହି ପୁରସ୍କାର ବାସ୍ତବରେ ସେଇମାନଙ୍କ ପାଇଁ । ସେମାନଙ୍କ ତରଫରୁ ମୁଁ ଏହାକୁ ନମ୍ରତାର ସହ ଗ୍ରହଣ କରୁଛି ।"

ବିଜ୍ଞାନକୁ ଜନ ହିତକର କାର୍ଯ୍ୟରେ ବ୍ୟବହାର କରିବା ନିମନ୍ତେ ପିଲାଦିନେ ସ୍ୱପ୍ନ ଦେଖିଥିଲେ ଜୋସେଫ୍ ରୋଟ୍‌ବ୍ଲାଟ୍ । ତାଙ୍କର ଏହି ସ୍ୱପ୍ନକୁ ସେ ସଫଳ କରିଦେଲେ ।

ଏ ଯାବତ୍, ଜଣେ ରସାୟନ ବିଜ୍ଞାନୀ ଏବଂ ଦୁଇଜଣ ପଦାର୍ଥ ବିଜ୍ଞାନୀ ବୈଜ୍ଞାନିକ ହୋଇମଧ୍ୟ ***ଶାନ୍ତି ପାଇଁ ନୋବେଲ୍ ପୁରସ୍କାର*** ପାଇଛନ୍ତି । ପଦାର୍ଥ ବିଜ୍ଞାନୀ ଦୁଇଜଣ ହେଉଛନ୍ତି ଜୋସେଫ୍ ରୋଟ୍‌ବ୍ଲାଟ୍ ଏବଂ ରୁଷିଆର ଆଣ୍ଡ୍ରେଇ ସାଖାରୋଭ୍ । ରସାୟନ ବିଜ୍ଞାନୀ ଜଣକ ଆମେରିକାର ଲାଇନସ୍ କାର୍ଲ୍ ପଲିଙ୍ଗ । ପ'ଲିଙ୍ଗ୍ ମଧ୍ୟ ରସାୟନ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ ।



# ଏ ଯୁଗର ଦଧୀଚି

ପୁରାଣ କଥା ଅନୁଯାୟୀ ବୃତ୍ରାସୁରର ଅତ୍ୟାଚାରରେ ଦେବତାମାନେ ବଡ଼ କଷ୍ଟ ପାଇଲେ । ତାକୁ ବିନାଶ କରିବା ନିମନ୍ତେ ଦରକାର ପଡ଼ିଲା ବଜ୍ରାସ୍ତ୍ର । କିନ୍ତୁ, ସେହି ବଜ୍ରାସ୍ତ୍ର ତିଆରି ହେବ ଦଧୀଚି ମୁନିଙ୍କ ଅସ୍ଥି ବା ହାଡ଼ରେ । ଦେବତାମାନଙ୍କଠାରେ ଭାବେଣି ପଡ଼ିଲା । ଦଧୀଚି ମୁନି ନିଜେ ନ ମଲେ ତାଙ୍କ ଅସ୍ଥି ପାଇବା ତ ସମ୍ଭବ ନୁହେଁ । ଦଧୀଚିଙ୍କୁ ଅବା ମାରିବ କିଏ ? ଦେବତାମାନେ ମୁନିଙ୍କ ନିକଟକୁ ଯାଇ ନିଜର ଦୁଃଖ କଥା କହିଲେ । ଦେବତାମାନଙ୍କୁ ରକ୍ଷା କରିବା ନିମନ୍ତେ ନିଜର ଅସ୍ଥି ଦାନ କରିବା ପାଇଁ ଅତି ଖୁସିରେ ରାଜି ହୋଇଗଲେ ମୁନି । ମୃତ୍ୟୁବରଣ କରିବା ପୂର୍ବରୁ ସେ ନିଜ ଇଚ୍ଛାରେ ନିଜର ଅସ୍ଥି ଇନ୍ଦ୍ରଙ୍କ ହାତରେ ଅର୍ପଣ କରିବାପାଇଁ ସ୍ୱୀକାର କରିଥିଲେ ଓ ତା ପରେ ନିଜ ଇଚ୍ଛାରେ ମୃତ୍ୟୁବରଣ କଲେ । ଦଧୀଚିଙ୍କ ଅସ୍ଥିରେ ଦେବତାମାନେ ତିଆରି କଲେ ବଜ୍ରାସ୍ତ୍ର । ସେହି ଅସ୍ତ୍ରର ଆଘାତରେ ବୃତ୍ରାସୁରର ମୃତ୍ୟୁ ହେଲା । ଏ ସିନା ପୁରାଣର କାହାଣୀ । ହେଲେ, ଗତ ମାସରେ ଏହିଭଳି ଗୋଟିଏ ଘଟଣା ଘଟିଯାଇଛି । ଆମ୍ଭମାନଙ୍କର ଜୀବନ ରକ୍ଷା କରିବା ନିମନ୍ତେ ନିଜ ଜୀବନକୁ ବଳି ଦେଇଛନ୍ତି ଡ଼ାକ୍ତର କାରୋଲୋ ଉର୍ବାନୀ ।

ତୁମ୍ଭମାନଙ୍କ ଭିତରୁ କେହି କେହି 'ସାର୍ସ୍' ନାମକ ରୋଗ ବିଷୟରେ ଖବର କାଗଜରୁ ପଢ଼ିଥିବ । ସାର୍ସ୍ ହେଉଛି ରୋଗଟିର ଛୋଟ ନାଁ । ରୋଗଟିର ପୂରା ନାଁଟା ହେଲା - 'ସିଭିଅର୍ ଆକ୍ୟୁଟ୍ ରେସ୍‌ପିରେଟରୀ ସିଣ୍ଡ୍ରୋମ୍' । ଏହା ଏକ ଭୂତାଣୁ ରୋଗ । ଯେଉଁ ଜାତିର ଭୂତାଣୁ ସାଧାରଣ ସର୍ଦ୍ଦିରୋଗ କରାଇଥାଏ, ସେହି ଜାତିର ଭୂତାଣୁ ମଧ୍ୟ ସାର୍ସ୍ ରୋଗ କରାଇଥାଏ । କିନ୍ତୁ, ସର୍ଦ୍ଦିରୋଗରେ ରୋଗୀ ମରିଯାଏ ନାହିଁ । ହେଲେ, ସାର୍ସ୍ ରୋଗରେ ପଡ଼ି ଶହ ଶହ ଲୋକ ମୃତ୍ୟୁବରଣ କରି ସାରିଲେଣି । ୩୦ଟି ଦେଶର ହଜାର ହଜାର ଲୋକ ରୋଗଦ୍ୱାରା ଆକ୍ରାନ୍ତ ହୋଇପଡ଼ିଛନ୍ତି । ଆମ ଦେଶର ଗୋଆ ରାଜ୍ୟରେ ପ୍ରଥମ ସାର୍ସ୍ ରୋଗୀକୁ ଚିହ୍ନଟ କରାଯାଇଥିବାର ଖବର ପ୍ରକାଶ ପାଇଛି ।

ଗତବର୍ଷ ନଭେମ୍ବର ମାସରେ ଚୀନ୍ ଦେଶର ଗାଙ୍ଗଡ଼ୋଙ୍ଗ ପ୍ରଦେଶରେ ପ୍ରଥମ ରୋଗୀର ସନ୍ଧାନ ମିଳିଥିଲା ।

ଡ଼ାକ୍ତର କାରାଲୋ ଉର୍ବାନୀ ଥିଲେ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ପଶ୍ଚିମ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳ ପାଇଁ ସଂକ୍ରାମକ ରୋଗଗୁଡ଼ିକର ଡ଼ାଇରେକ୍ଟର । ପୃଥିବୀବାସୀଙ୍କୁ ମାରାତ୍ମକ 'ସାରସ୍' ଭୂତାଣୁ ବିଷୟରେ ସତର୍କ କରାଇଦେବାରେ ସେ ଥିଲେ ସର୍ବପ୍ରଥମ ବ୍ୟକ୍ତି । ଉର୍ବାନୀ କାମ କରୁଥିଲେ ଭିଏତ୍ନାମର ରାଜଧାନୀ ହାନୋଇଠାରେ ଥିବା ଏକ ଡ଼ାକ୍ତରଖାନାରେ । ସେହି ଡ଼ାକ୍ତରଖାନାରେ ନିଯୁକ୍ତି ହୋଇଥିବା କେତେକ ନର୍ସ ସର୍ଦ୍ଦିରୋଗ ଭଳି ରୋଗରେ ପଡ଼ି ମରିଯିବାର ଦେଖି ତାଙ୍କ ମନରେ ସନ୍ଦେହ ହେଲା । ତେଣୁ, ସେ ଏହି ନୂଆ ରୋଗଟି ବିଷୟରେ ସମସ୍ତଙ୍କୁ ସାବଧାନ କରେଇ ଦେଲେ । ଡ଼ାକ୍ତର ଉର୍ବାନୀ ଯଦି ଠିକ୍ ସମୟରେ ବୈଜ୍ଞାନିକମାନଙ୍କୁ ଚେତାବନୀ ଶୁଣେଇ ନ ଥାନ୍ତେ, ତେବେ ଆହୁରି ଅନେକ ଲୋକ ଏହି ରୋଗ ଭୋଗି ଅକାଳରେ ମରିଯାଇଥାନ୍ତେ ।

ପୃଥିବୀବାସୀଙ୍କୁ ସତର୍କ କରେଇ ଦେଇ, ଡ଼ାକ୍ତର ଉର୍ବାନୀ ସିନା ଅନ୍ୟମାନଙ୍କର ଜୀବନ ରକ୍ଷା କରିଦେଲେ, ହେଲେ, ତାଙ୍କୁ ଧରି ପକେଇଲା 'ସାର୍ସ୍' ରୋଗ । ସାରସ୍ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ଉରବାନୀ ନିଜେ ମୃତ୍ୟୁମୁଖରେ ପଡ଼ିଲେ । ମରିବା ପୂର୍ବରୁ ସେ ପରିଚୟ ଦେଇଥିଲେ ତାଙ୍କ ମହତ ପଣିଆଁର । 'ସାର୍ସ୍' ରୋଗ ବିଷୟରେ ବୈଜ୍ଞାନିକ ମାନେ ଯେପରି ଚିକିନିଖି କଥାମାନ ଜାଣିପାରିବେ, ସେହି ଉଦ୍ଦେଶ୍ୟରେ ସେ ଦାନ କରିଯାଇଥିଲେ ତାଙ୍କ ଫୁସ୍ ଫୁସ୍ ଦୁଇଟିକୁ । ଡ଼ାକ୍ତର ଉର୍ବାନୀଙ୍କ ମୃତ୍ୟୁ ପରେ ତାଙ୍କ ଶରୀରରୁ ଫୁସ୍‌ଫୁସ୍‌କୁ ବାହାର କରି ନେଇ ବୈଜ୍ଞାନିକ ମାନେ 'ସାର୍ସ୍' ଭୂତାଣୁର ନାଡ଼ି ନକ୍ଷତ୍ର ଜାଣିବା ନିମନ୍ତେ ପରୀକ୍ଷା ନିରୀକ୍ଷା ଚଳେଇଛନ୍ତି ।

'ସାର୍ସ୍' ଭୂତାଣୁ ଅତି ସଂକ୍ରାମକ । ସୁସ୍ଥଲୋକ ରୋଗୀ ସଂସ୍ପର୍ଶରେ ଆସିଲେ ତାଙ୍କୁ ରୋଗ ହେବାର ସମ୍ଭାବନା ବେଶୀ । ତେଣୁ, ହାନୋଇ ଡ଼ାକ୍ତରଖାନାରେ ଚିକିତ୍ସିତ ହେଉଥିବା ସେହି ରୋଗୀମାନଙ୍କ ନିକଟକୁ ଯିବା ଆସିବା ନ କରିବା ପାଇଁ ଡ଼ାକ୍ତର ଉର୍ବାନୀଙ୍କୁ ତାଙ୍କ ସ୍ତ୍ରୀ ବାରମ୍ବାର ମନା କରିଥିଲେ । କିନ୍ତୁ ଉର୍ବାନୀ ସ୍ତ୍ରୀଙ୍କ କଥାରେ କାନ ଦେଲେ ନାହିଁ । ବରଂ, ସ୍ତ୍ରୀଙ୍କୁ ମୁହେଁ ମୁହେଁ ଶୁଣେଇ ଦେଇ ସେ କହିଥିଲେ, "ଏହି ବିପଦ ବେଳେ ମୁଁ ଯଦି ରୋଗୀମାନଙ୍କର ସେବା କରିବିନି କି ସେମାନଙ୍କର ଭଲମନ୍ଦ ବୁଝିବିନି, ତେବେ, ମୁଁ ଏଠାରେ ଅଛି କାହିଁକି ? ଅଛି କଣ ଇ-ମେଲ୍‌ରେ ଚିଠି ପଠେଇବା ପାଇଁ ? ଫାଇଲ୍‌କାମ କରିବା ପାଇଁ ? ବନ୍ଧୁମାନଙ୍କ ଗହଣରେ ଖିଆପିଆ ଆଉ ଭୋଜିଭାତରେ ମାତିବା ପାଇଁ ?"

ସ୍ତ୍ରୀଙ୍କ କଥାରେ କାନ ନ ଦେଇ ଡ଼ାକ୍ତର ଭରବାନୀ ରୋଗୀଙ୍କ ସେବାରେ ଦିନରାତି ଲାଗି ପଡ଼ିଲେ ଓ 'ସାର୍‌ସ୍' ଭୂତାଣୁ ଆକ୍ରମଣର ଶିକାର ହୋଇପଡ଼ି ମୃତ୍ୟୁବରଣ କଲେ । ଏହି ଘଟଣାଟିରୁ ତାଙ୍କର ମହାନ୍ ଚରିତ୍ର ବିଷୟରେ କଣ ସୂଚନା ମିଳୁନାହିଁ ?

ସାରା ବିଶ୍ୱର ବୈଜ୍ଞାନିକମାନେ ଡ଼ାକ୍ତର କାରୋଲା ଭର୍‌ବାନୀଙ୍କ ମହାନ୍ ବଳିଦାନ ପ୍ରତି ସେମାନଙ୍କର ସମ୍ମାନ ଜଣାଇଛନ୍ତି । 'ସାର୍‌ସ୍' ଭୂତାଣୁକୁ ଡ଼ାକ୍ତର ଭର୍‌ବାନୀଙ୍କ ନାମରେ ନାମିତ କରିବା ନିମନ୍ତେ ସେମାନେ ନିଷ୍ପତ୍ତି ନେଇଛନ୍ତି ।

ତେଣୁ, ଡ଼ାକ୍ତର କାରୋଲୋ ଭର୍‌ବାନୀ ମରି ମଧ୍ୟ ଅମର ହୋଇ ରହିଗଲେ । ତାଙ୍କର ତ୍ୟାଗ କେଉଁ ଗୁଣରେ ଅବା ଦଧୀଚିଙ୍କ ତ୍ୟାଗଠାରୁ ଊଣା ?



# ସାଧାରଣ ଘଟଣାରୁ ଅସାଧାରଣ ଉଦ୍‌ଭାବନ

ସାଧାରଣତଃ ବୈଜ୍ଞାନିକମାନଙ୍କୁ ଖୁବ୍ ବୁଦ୍ଧିଆ ବୋଲି ଆମେ ଭାବିଥାଉ । ହଁ, ଏହା କେତେକାଂଶରେ ସତ । କିନ୍ତୁ, ଆମେ ସାଧାରଣ ଲୋକେ ମଧ୍ୟ କମ୍ ବୁଦ୍ଧିଆ ନୋହୁଁ । ତାହାହେଲେ, ଆମେ କାହିଁକି ବୈଜ୍ଞାନିକ ହୋଇପାରୁନେ ? ନୂଆ ନୂଆ ଆବିଷ୍କାର କି ଉଦ୍‌ଭାବନ କରି ନାଁ କମେଇପାରୁନେ ? ଏହାର କାରଣ ଖୁବ୍ ସହଜ । କାରଣଟି ହେଲା ଯେ ଆମ ପ୍ରତ୍ୟେକଙ୍କ ମନ ଭିତରେ କେତେ ନା କେତେ ପ୍ରଶ୍ନ ଉଙ୍କିମାରିଥାଏ । ସାଧାରଣ ଲୋକେ ସେହି ସବୁ ପ୍ରଶ୍ନ ଉପରେ କୌଣସି ଜୋର୍ ଦିଅନ୍ତିନି କି ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜିବା ପାଇଁ ଚେଷ୍ଟା କରନ୍ତିନି । ହେଲେ, ଯେଉଁ ଲୋକମାନେ ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜିବାପାଇଁ ଦେହ ଆଉ ମନକୁ ବିଶ୍ରାମ ନ ଦେଇ ଦିନ ରାତି ଲାଗିପଡ଼ନ୍ତି, ସେମାନଙ୍କୁ ହିଁ ଉତ୍ତର ମିଳିଯାଏ ଓ ସେଇମାନେ ହିଁ ପରିଚିତ ହୁଅନ୍ତି ବୈଜ୍ଞାନିକ ରୂପେ । ଉତ୍ତର ପାଇବା ନିମନ୍ତେ ସେମାନେ ନିଜର ଆଖି, କାନ, ଚିନ୍ତା ଇତ୍ୟାଦିକୁ ସବୁବେଳେ ସଜାଗ କରି ରଖିଥାନ୍ତି । ଏପରିକି ଅତି ସାମାନ୍ୟ ଘଟଣାରୁ ବି ସେମାନଙ୍କୁ ଆବିଷ୍କାର କରିବାର ଉପାୟ ମିଳିଯାଏ । ଶୁଣ, କେତୋଟି ଉଦାହରଣ ।

ତୁମେମାନେ ଭେଲ୍‌କ୍ରୋ ଦେଖିଥିବ । ଭେଲ୍‌କ୍ରୋ ପଟିକୁ ଅନ୍ୟ ଏକ ଭେଲ୍‌କ୍ରୋ ପଟି ଉପରେ ଚିପିଦେଲେ ଉଭୟ ପଟି ଲାଖିଯାଆନ୍ତି । ପଟିଟିକୁ ଟାଣି ଦେଲେ ତାହା 'ଚରର' ଶବ୍ଦ କରି ଅଲଗା ହୋଇଯାଏ । ହାତବନ୍ଧା ଘଣ୍ଟାରେ ଏବେ ଭେଲ୍‌କ୍ରୋ ପଟି ବ୍ୟବହାର କରାଯାଉଛି । ବୋତାମ ଏବଂ ଫିତାକୁ ତଡ଼ି ଏବେ ଆସ୍ଥାନ ଜମେଇ ଚାଲିଛି ଭେଲ୍‌କ୍ରୋ ପଟି । କିନ୍ତୁ, ଭେଲ୍‌କ୍ରୋ ତିଆରି କରିବାର ଧାରଣା କାହା ମୁଣ୍ଡକୁ ପ୍ରଥମେ ଢୁକିଥିଲା ? କିପରି ଅବା ଢୁକିଲା ଏହି ଧାରଣା ?

ସୁଇଜରଲ୍ୟାଣ୍ଡରେ ଥିଲେ ଜଣେ ଇଞ୍ଜିନିୟର୍ । ତାଙ୍କର ନାଁ ଜର୍ଜେସ୍ ଡ଼ି ମେଷ୍ଟ୍ରାଲ୍ । ଥରେ ସେ ତାଙ୍କ କୁକୁରକୁ ବୁଲେଇ ନେଇଥିଲେ ଗୋଟିଏ ପଡ଼ିଆକୁ । ପଡ଼ିଆରେ ଚାଲିଲେ ମୋଜା, ପ୍ୟାଣ୍ଟ ଇତ୍ୟାଦିରେ ଗୁଗୁଚିଆ ଲାଖି ଯାଉଥିବାର ତୁମେମାନେ ଦେଖିଛ । ସେଦିନ ବି ମେଷ୍ଟ୍ରାଲ୍‌ଙ୍କ ମୋଜା ଓ ପ୍ୟାଣ୍ଟ୍ ଏବଂ କୁକୁରର ଦେହସାରା

ଗୁଗୁଚିଆ ଲାଗିଯାଇଥିଲା । ଗୁଗୁଚିଆ ଛଡ଼େଇ ଛଡ଼େଇ ବଡ଼ ବିରକ୍ତି ଲାଗିଲା ମେଷ୍ଟ୍ରାଲ୍‌ଙ୍କୁ । ଏତିକିବେଳେ ତାଙ୍କ ମନରେ ପ୍ରଶ୍ନ ଉଠିଲା, "ଗଛରୁ ଖସିଆସି ଗୁଗୁଚିଆ ମୋଜା, ପ୍ୟାଣ୍ଟ କି ଲୋମରେ ଲାଖି ଯାଉଛି କିପରି ? ଏହାର କାରଣ ଅବା କଅଣ ?

ଏହା ଜାଣିବା ନିମନ୍ତେ ଖୁବ୍ କୌତୂହଳୀ ହୋଇ ଉଠିଲେ ସେ । କେତୋଟି ଗୁଗୁଚିଆ ସଂଗ୍ରହ କରି ତାକୁ ସେ ଅଣୁବୀକ୍ଷଣ ଯନ୍ତ୍ର ତଳେ ରଖି ପରୀକ୍ଷା କରିବାକୁ ଲାଗିଲେ । ଖାଲି ଆଖିକୁ ଦେଖାଯାଉନଥିବା ଜିନିଷ ଅଣୁବୀକ୍ଷଣ ଯନ୍ତ୍ରରେ ଖୁବ୍ ବଡ଼ ଦେଖାଯାଏ । ତେଣୁ, ତାକୁ ସହଜରେ ଦେଖିହୁଏ ।

ସେ ଦେଖିବାକୁ ପାଇଲେ ଯେ ଗୁଗୁଚିଆର ଯେଉଁ ମୁଣ୍ଡ ମୋଜା ଏବଂ ପ୍ୟାଣ୍ଟରେ ଲାଖି ରହିଥାଏ, ସେହି ମୁଣ୍ଡରେ ରହିଛି ଟିକି ଟିକି ଅନେକ ଆଙ୍କୁଡ଼ି ବା ବଙ୍କାମୁନ । ସେହି ଛୋଟ ଛୋଟ ଆଙ୍କୁଡ଼ି ଗୁଡ଼ିକୁ ମୋଜା, ପ୍ୟାଣ୍ଟ୍ କି କୁକୁର ଲୋମରେ ଥିବା କ୍ଷୁଦ୍ର କ୍ଷୁଦ୍ର ଗୋଲାକାର ଘେର ସହ  ଦୃଢ଼ ଭାବରେ ଲାଖି ଯାଉଛି ।

ମେଷ୍ଟ୍ରାଲ୍ ଭେଲ୍‌କ୍ରୋ ତିଆରି କରିବା ନିମନ୍ତେ ଏହି କୌଶଳ ଆବଲମ୍ବନ କଲେ । ସେ ତିଆରି କଲେ ଦୁଇଟି ନାଇଲନ୍ ପଟି । ଗୋଟିଏ ପଟିରେ ରହିଲା କ୍ଷୁଦ୍ର କ୍ଷୁଦ୍ର ମୁନିଆଁ ଆଙ୍କୁଡ଼ି ଏବଂ ଅନ୍ୟଥିରେ ରହିଲା ସୂକ୍ଷ୍ମକଣା ବିଶିଷ୍ଟ ଜଟାଳିଆ କେଶ । ଦୁଇଟି ଯାକ ପଟିକୁ ଉପର ତଳ କରି ଚିପି ଦେଲେ ଉଭୟ ଦୃଢ଼ ଭାବରେ ଲାଖି ରହୁଥିଲେ । ବାସ୍, ତିଆରି ହୋଇଗଲା ଭେଲ୍‌କ୍ରୋପଟି । ଗୁଗୁଚିଆ ହିଁ ବତେଇ ଦେଲା ଭେଲ୍‌କ୍ରୋପଟି ତିଆରି କରିବାର ବାଟ ! x x x

ଦୌଡ଼ ପ୍ରତିଯୋଗିତାରେ ଭାଗ ନେଉଥିବା ଦୌଡ଼ାଳିମାନେ ପିନ୍ଧନ୍ତି ଏକ ସ୍ୱତନ୍ତ୍ର ଧରଣର ଜୋତା । ସେହି ଜୋତାରେ ଲଗାଯାଇଥିବା ତଳିପାକୁ କୁହାଯାଏ । 'ୱାଫଲ ତଳିପା' । ୱାଫଲ୍ ହେଉଛି ମଇଦା, କ୍ଷୀର, ଅଣ୍ଡା ଇତ୍ୟାଦିରେ ପ୍ରସ୍ତୁତ କ୍ଷୁଦ୍ର, କୁତୁମୁଡ଼ିଆ କେକ୍ । କେକ୍ ସହିତ ଅବା ଜୋତା-ତଳିପାର କି ମେଳ ?

ବିଲ୍ ବୋଓ୍ୱେର୍‌ମ୍ୟାନ ଥିଲେ ଜଣେ ଦୌଡ଼ାଳି । ଏହି କ୍ରୀଡ଼ାରୁ ଅବସର ନେବା ପରେ ସେ ଦୌଡ଼ାଳିମାନଙ୍କୁ ତାଲିମ ଦେବା କାମ କରିବା ପାଇଁ ନିଯୁକ୍ତି ହେଲେ । ନିଜର ଜଣେ ପୁରାତନ ଛାତ୍ରଙ୍କ ସହ ମିଶି ସେ ଆରମ୍ଭ କଲେ 'ନାଇକ୍' ନାମକ ଜୋତା ତିଆରି  କମ୍ପାନୀ । ସେତେବେଳେ ଦୌଡ଼ାଳିମାନେ ଯେଉଁ ଜୋତାପିନ୍ଧି ଦୌଡୁଥିଲେ, ତାହା ଥିଲା ବଡ଼ ଓଜନିଆ ଏବଂ ବେଢ଼ଙ୍ଗିଆ । କିନ୍ତୁ, ବୋଓ୍ୱେର୍‌ମ୍ୟାନ୍ ହାଲୁକା ଜୋତା ତିଆରି କରି ଯୋଗାଇ ଦେଲେ । ଏହି ଜୋତା ପିନ୍ଧିଲେ ଦୌଡ଼ିବାରେ

ବେଶ୍ ସୁବିଧା ହେଉଥିଲା । ଜୋତାର ତଳିପା ତିଆରି ହୋଇଥିଲା ରବରରେ । ଏଥିରେ ଆହୁରି ଉନ୍ନତି ଆଣିବାକୁ ଚାହୁଁଥିଲେ ସେ । କିନ୍ତୁ କୌଣସି ବୁଦ୍ଧି ଜୁଟୁ ନ ଥାଏ ତାଙ୍କ ମୁଣ୍ଡକୁ ।

ବୋୱେରମ୍ୟାନ୍‌ଙ୍କ ସ୍ତ୍ରୀ ସକାଳ ଜଳଖିଆ ପାଇଁ ସବୁଦିନେ ୱାଫଲ୍ ତିଆରି କରିଥାନ୍ତି । ୱାଫଲ୍ ତାୱାକୁ ନେଇ ଚୁଲି ଉପରେ ରଖି ତତେଇ ଚାଲିଲେ ଏବଂ ତାହା ତାତିଯିବା ପରେ ତା ଉପରେ ଥୋଇଦେଲେ ରବର ଖଣ୍ଡେ । ସେ ଆଶା କରିଥିଲେ ଯେ ୱାଫଲ୍ ଭଳି ରବର ଖଣ୍ଡଟି ମଧ୍ୟ ଫୁଲି ଉଠିବ ।  ପ୍ରକୃତରେ ତାହା ହିଁ ଘଟିଲା । ବୋୱେରମ୍ୟାନ୍ ସେଇ ରବର ଖଣ୍ଡଟିକୁ ଉଠେଇ ନେଇ ତା ପରଦିନ ସକାଳେ ହଳେ ଜୋତାର ଦୁଇ ତଳିପାରେ ଲଗେଇ ଦେଲେ । ସେହି ଜୋତାକୁ ନିଜେ ପିନ୍ଧି ପକେଇଲେ ସେ । ଦୌଡ଼ାଳି ମାନଙ୍କପାଇଁ ଯେଉଁଭଳି ଜୋତା ଦରକାର । ସେହି ନୂଆ ଜୋତା ତାହା ପୂରଣ କରୁଥିଲା । ବାସ୍, ବୋୱେରମ୍ୟାନ ରାତାରାତି ପାଲଟିଗଲେ 'ୱାଫଲ୍-ତଳିପା' ବିଶିଷ୍ଟ ଜୋତାର ଉଦ୍‌ଭାବକ । x x x

ତୁମ୍ଭେମାନେ ସମସ୍ତେ ଷ୍ଟେଥୋସ୍‌କୋପ୍ ଦେଖିଥିବ । ରୋଗୀ ଦେହରେ ଷ୍ଟେଥୋସ୍‌କୋପ୍ ଲଗେଇ ରୋଗୀର ହୃତ୍‌ପିଣ୍ଡ, ଫୁସ୍‌ଫୁସ୍, ପେଟ ଇତ୍ୟାଦିକୁ ଡ଼ାକ୍ତରମାନେ ପରୀକ୍ଷା କରିଥାନ୍ତି । ପିଲାଙ୍କ ଖେଳରୁ ହିଁ ଷ୍ଟେଥୋସ୍‌କୋପ୍ ତିଆରିର ଧାରଣା ପାଇ ଯାଇଥିଲେ ରେନେ ଲେନେକ୍ । ନିଜ ଖେଳରେ ପିଲାମାନେ ବ୍ୟବହାର କରୁଥିଲେ କାଠପଟାଟିଏ । ଜଣେ ପିଲା ପଟାଟିର ଗୋଟିଏ ପଟେ ପିନ୍ ସାହାଯ୍ୟରେ ଆମ୍ପୁଡୁଥିଲା । ଅନ୍ୟ ଜଣେ ପିଲା ପଟାର ଆର ମୁଣ୍ଡରେ କାନ ରଖି ସେହି ରାମ୍ପୁଡ଼ା ଶବ୍ଦ ଶୁଣି ପାରୁଥିଲା । ପିଲାଙ୍କ ଦେଖାଦେଖି ଲେନେକ୍ ମଧ୍ୟ ପଟାଉପରେ କାନରଖି ଅତି ସ୍ପଷ୍ଟଭାବରେ ରାମ୍ପୁଡ଼ା ଶବ୍ଦ ଶୁଣିପାରିଲେ ।

ଲେନେକ୍ ଥିଲେ ଜଣେ ଡ଼ାକ୍ତର । ସେତେବେଳେ ଡ଼ାକ୍ତରମାନେ ରୋଗୀର ଛାତି କିମ୍ବା ପେଟ ଉପରେ ନିଜର କାନରଖି ହୃତ୍‌ପିଣ୍ଡ, ଫୁସ୍‌ଫୁସ୍ କି ପେଟ ଭିତରୁ ବାହାରୁଥିବା ଶବ୍ଦ ଶୁଣୁଥିଲେ । ଥରେ ହୃଦ୍‌ରୋଗ ଭୋଗୁଥିବା କିଶୋରୀଟିଏ ଲେନେକ୍‌ଙ୍କଠାରୁ ପରାମର୍ଶ ନେବାକୁ ଆସିଥିଲା । କିଶୋରୀଟି ଥିଲା ଖୁବ୍ ମୋଟା । ତା ଛାତି ଉପରେ କାନ ରଖିବା ସୁନ୍ଦର ହେବନାହିଁ କି କାନରଖିଲେ ବି ଛାତିରେ ବହଳିଆ ଚର୍ବି ଜମିଥିବାରୁ କିଛି ଶୁଣାଯିବନାହିଁ ଭାବି ଲେନେକ୍ ଗୋଟିଏ ବୁଦ୍ଧି ପାଞ୍ଚିଲେ । ସେ ମୋଟାକାଗଜ ଖଣ୍ଡେ ନେଇ ତାକୁ ଗୁଡ଼େଇ ତିଆରି କଲେ ଗୋଟିଏ କାଗଜ ନଳୀ । ନଳୀର ଗୋଟିଏ ମୁଣ୍ଡକୁ ଝିଅଟିର ଛାତିରେ ଥୋଇ ଅନ୍ୟ ମୁଣ୍ଡରେ ରଖିଲେ

ନିଜର କାନ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ରୋଗୀ ହୃତ୍‌ପିଣ୍ଡର ଶବ୍ଦ ତାଙ୍କୁ ସ୍ପଷ୍ଟ ଶୁଣାଗଲା । ବରଂ, ହୃତ୍‌ପିଣ୍ଡରୁ ବାହାରୁଥିବା ଶବ୍ଦ ବେଶୀଜୋର୍‌ରେ ଶୁଣି ହେଲା । ପରେ ସେ କାଠନଳୀ ତିଆରି କରି ଏଥିପାଇଁ ବ୍ୟବହାର କରିଥିଲେ । ଏହା ହିଁ ଥିଲା ଷ୍ଟେଥୋସ୍କୋପ୍ ଉଦ୍‌ଭାବନର କାହାଣୀ ଏବଂ ରେନେ ଲେନେକ୍ ଥିଲେ ଏହାର ଉଦ୍‌ଭାବକ ।

ବେଳେବେଳେ ସମାନ ପ୍ରକାରର ଧାରଣା ପାଖାପାଖି ସମାନ ସମୟରେ ଦୁଇଜଣଙ୍କ ମୁଣ୍ଡକୁ ବି ଢୁକିଥାଏ । ଏଲିସା ଗ୍ରେ' ନାମକ ଜଣେ ବ୍ୟକ୍ତି ନିଜର ଏକ ଉଦ୍‌ଭାବନ ବିଷୟରେ ଜଣେଇବା ନିମନ୍ତେ ୧୮୭୬ ମସିହା ଫେବୃଆରୀ ୧୪ ତାରିଖରେ ଆମେରିକାର ପ୍ୟାଟେଣ୍ଟ ଅଫିସ୍‌ରେ ଯାଇ ପହଞ୍ଚିଲେ । ଉକ୍ତ ଉଦ୍‌ଭାବନରେ ତାଙ୍କର ଏକଚାଟିଆ ଅଧିକାର ରହିବ ବୋଲି ଅନୁମତି ଚାହିଁଲେ । ନିଜର ଉଦ୍‌ଭାବନ ପାଇଁ ଖୁବ୍ ଉତ୍ତେଜିତ ହୋଇ ପଡ଼ିଥାନ୍ତି ସେ । ଆଉକେହି ଏଭଳି ଉଦ୍‌ଭାବନ କରିପାରି ନ ଥିବ ବୋଲି ତାଙ୍କର ଦୃଢ଼ ଧାରଣା ଥାଏ । ଏଥିପାଇଁ ବର୍ଷ ବର୍ଷ ଧରି ପରିଶ୍ରମ କରିଥାନ୍ତି ସେ । ମଣିଷର କଥାବାର୍ତ୍ତାଶବ୍ଦକୁ ତାର ସାହାଯ୍ୟରେ ଦୂରବର୍ତ୍ତୀ ସ୍ଥାନକୁ ପ୍ରେରଣ କରିବାର ପଦ୍ଧତି ସେ ପ୍ରଥମେ ଉଦ୍‌ଭାବନ କରିପାରିଛନ୍ତି ବୋଲି ଏଲିସା ଗ୍ରେ' ଦାବି ଜଣେଇଲେ ।

କିନ୍ତୁ, ପ୍ୟାଟେଣ୍ଟ ଅଫିସ୍ ତାଙ୍କୁ ଜଣେଇ ଦେଲା ଯେ ମାତ୍ର ଦୁଇଘଣ୍ଟା ପୂର୍ବରୁ ଆଲେକ୍‌ଜାଣ୍ଡାର ଗ୍ରାହାମ୍ ବେଲ୍ ନାମକ ଜଣେ ବ୍ୟକ୍ତି ଉକ୍ତ ଉଦ୍‌ଭାବନ ପାଇଁ ପ୍ୟାଟେଣ୍ଟ ହାସଲ କରିନେଲେ । ତାହା ଥିଲା ଟେଲିଫୋନ୍‌ର ଉଦ୍‌ଭାବନ ! x x x

ଯାହାହେଉ, ଆମ ପରିବେଶ ହିଁ ଧାରଣାର ଗନ୍ତାଘର । ନିଜେ ସଚେତନ ଏବଂ ଏକାଗ୍ର ରହିପାରିଲେ ପରିବେଶରୁ ଅନେକ ନୂତନ ଧାରଣା ମିଳି ପାରିବ । ବହୁ ବୈଜ୍ଞାନିକ ଏବଂ ଉଦ୍‌ଭାବକ ପ୍ରକୃତିକୁ ହିଁ ଶିକ୍ଷକ ରୂପେ ମାନିଥାଆନ୍ତି !



# ରକେଟ୍ ଇତିହାସର ସେହି ଅଢ଼େଇ ସେକେଣ୍ଡ୍

ରବର୍ଟ ହଚିଙ୍ଗସ୍ ଗୋଡ୍ଡାର୍ଡ୍ ଥିଲେ ଆଧୁନିକ ରକେଟ୍ ବିଜ୍ଞାନର ଜନକ । ସେ ହିଁ ପ୍ରସ୍ତୁତ କରିଥିଲେ ପୃଥିବୀର ସର୍ବପ୍ରଥମ ତରଳ-ଇନ୍ଧନ ରକେଟ୍ । ଗୋଡ୍ଡାର୍ଡ଼୍ଙ୍କ କାର୍ଯ୍ୟ ବିଷୟରେ ନ ଜାଣିଲେ ରକେଟ୍‌ର ଇତିହାସ ଅନୁଧ୍ୟାନ କରିବା ସମ୍ଭବ ନୁହେଁ ।

ଦୁଇବର୍ଷରୁ ଅଧିକ କାଳ ଧରି ଗୋଡ୍ଡାର୍ଡ୍ ତରଳ-ଇନ୍ଧନ ରକେଟ୍ ମୋଟର୍‌ର ଡ଼ିଜାଇନ୍ ବିକାଶରେ ମନଧ୍ୟାନ ଢ଼ାଳି ଦେଇଥିଲେ । ଉଡ଼ାଣ ପରୀକ୍ଷଣ ପାଇଁ ଏକ ରକେଟ୍ ପ୍ରସ୍ତୁତ କରିବା ନିମନ୍ତେ ଉଦ୍ୟମ ଆରମ୍ଭ କରିଦେଲେ ସେ । ଏହା ପୂର୍ବରୁ ସେ ଯେଉଁ ରକେଟ୍ ଗୁଡ଼ିକୁ ତିଆରି କରିଥିଲେ, ସେଗୁଡ଼ିକ ତିଆରି ହୋଇଥିଲା ପିତ୍ତଳରେ । କିନ୍ତୁ, ପିତ୍ତଳ ନିର୍ମିତ ରକେଟ୍ ଖୁବ୍ ଓଜନିଆ ହୋଇଥିବାରୁ, ଓଜନ କମେଇବା ଉଦ୍ଦେଶ୍ୟରେ ସେ ମ୍ୟାଗ୍‌ନେସିଅମ୍ ଏବଂ ଆଲୁମିନିୟମ୍‌ର ମିଶ୍ରଧାତୁ ବ୍ୟବହାର କରିବା ନିମନ୍ତେ ନିଷ୍ପତ୍ତି ନେଲେ । ତେଣୁ, ରକେଟ୍‌ର କେତେକ ଉପକରଣ ତିଆରି ହେଲା ପିତ୍ତଳରେ ଏବଂ ଅନ୍ୟ କେତେକ ଉପକରଣ ତିଆରି ହୋଇଥିଲା ଷ୍ଟିଲ୍‌ରେ । ସ୍ଥାନୀୟ ଯନ୍ତ୍ରୋପକରଣ ଦୋକାନରୁ କ୍ରୟ କରାଗଲା ନଟ୍, ବୋଲ୍ଟ, ଷ୍ଟିଲ୍ ପାଇପ୍ ଏବଂ ଅନ୍ୟାନ୍ୟ ସାମଗ୍ରୀ । ନିଜ ହାତରୁ ଅର୍ଥ ଶ୍ରାଦ୍ଧ କରି ଏହି ସବୁ ଜିନିଷପତ୍ର କିଣାଗଲା । ସେତେବେଳେ ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍‌ରୁ ତାଙ୍କୁ ମିଳୁଥିଲା ସାମାନ୍ୟ ପରିମାଣର ଅନୁଦାନ । ରକେଟ୍ ପ୍ରସ୍ତୁତି ପାଇଁ ଠିକାରେ ନିଯୁକ୍ତି ଜଣେ କାରିଗରଙ୍କୁ ଯତ୍‌କିଞ୍ଚିତ୍ ପାରିଶ୍ରମିକ ଦେବାରେ ସେତକ ଖର୍ଚ୍ଚ ହୋଇ ଯାଉଥିଲା ।

ଖର୍ଚ୍ଚ କମେଇବା ନିମନ୍ତେ ଗୋଡ୍ଡାର୍ଡ୍ ରକେଟ୍‌ଟିକୁ ଯେତେଦୂର ସମ୍ଭବ ଛୋଟ କରିଥିଲେ । ଏ ସଂପର୍କରେ ନିଜର ଜଣେ ବନ୍ଧୁକୁ ସେ ଲେଖିଥିଲେ, "ବୁଝିଲ, ସେହି ପୁରୁଣା କଥାରେ କୌଣସି ପରିବର୍ତ୍ତନ ଘଟିନାହିଁ । କଥାଟି ହେଲା - ସୁଫଳ ଦେଖେଇ ନ ପାରିଲେ ସହାୟତା ମିଳିବନି । ଯଥେଷ୍ଟ ସହାୟତା ଯୋଗାଇ ନ ଦେଲେ ସୁଫଳ ପ୍ରାପ୍ତି ସମ୍ଭବ ନୁହେଁ ।" ତରଳ-ଇନ୍ଧନ ରକେଟ୍‌କୁ କାର୍ଯ୍ୟକ୍ଷମ କରେଇ ପାରିଲେ ହିଁ ସ୍ମିଥ୍‌ସୋନିଆନ୍ ପ୍ରତିଷ୍ଠାନ ତାଙ୍କୁ ଅନୁଦାନ ଯୋଗାଇଦେବ ବୋଲି ଆଶା ବାନ୍ଧିଥିଲେ ଗୋଡ୍ଡାର୍ଡ଼୍ ।

ପୂର୍ବରୁ ରକେଟ୍ ପ୍ରେରଣ କାର୍ଯ୍ୟ ସେ ସମ୍ପାଦନ କରୁଥିଲେ କ୍ଲାର୍କ ପଦାର୍ଥ ବିଜ୍ଞାନ ଅଟ୍ଟାଳିକା ନିକଟରେ । କିନ୍ତୁ ରକେଟ୍‌ର ଗର୍ଜନ ଏବଂ ବିସ୍ଫୋରଣର ଶବ୍ଦରେ କାନ ଅତଡ଼ା ପଡୁଥିବାରୁ ଆଖପାଖର ବସତି ବାସିନ୍ଦାମାନେ ଦୃଢ଼ ଆପତ୍ତି ଜଣେଇଲେ । ତେଣୁ, ଆହୁରି ଅଧିକ ଶବ୍ଦ ସୃଷ୍ଟି କରୁଥିା ରକେଟ୍ ପରୀକ୍ଷଣ ପାଇଁ ସେ କାମ ଆରମ୍ଭ କଲେ ଅଉବର୍ନଠାରେ ଥିବା ଗୋଟିଏ ଫାର୍ମରେ । ଫାର୍ମଟିର ମାଲିକାଣୀ ଥିଲେ ଶ୍ରୀମତୀ ଏଫି ୱାର୍ଡ । ଗୋଡ୍ଡାର୍ଡ୍‌ଙ୍କର ଦୂର ସମ୍ପର୍କୀୟା ମାଉସୀ ଥିଲେ ସେ । ମୂଳିଆ ଲଗେଇ ଏଫି ମାଉସୀ ସେହି ଫାର୍ମରେ ଷ୍ଟ୍ରବେରି ନାମକ ରସାଳ ଫଳ ଚାଷ କରାଉଥିଲେ । ଫାର୍ମରେ କଣ ପଟିଆ ହୋଇ ରହିଥିବା ଘାସ ପଡ଼ିଆରେ ରକେଟ୍ ପରୀକ୍ଷା ପାଇଁ ଖୁଣ୍ଟ ପୋତିବା ନିମନ୍ତେ ଗୋଡ୍ଡାର୍ଡ୍‌ଙ୍କୁ ଅନୁମତି ମିଳିଗଲା । ସେହି ପଡ଼ିଆରେ ଥିଲା ଏକ ପରିତ୍ୟକ୍ତ କୁକୁଡ଼ାଘର । କୁକୁଡ଼ାଘର ଭିତରେ ଗୋଡ୍ଡାର୍ଡ ତାଙ୍କର ଯନ୍ତ୍ରୋପକରଣ ଇତ୍ୟାଦି ରଖିଲେ । ଏହି ଅବାଗିଆ ପୁତୁରାକୁ ନେଇ ମାଉସୀଙ୍କ ମନରେ ଖୁବ୍ ଗର୍ବଥିଲା । ତେଣୁ, ସମୟେ ସମୟେ ରକେଟ୍‌ର ବିସ୍ଫୋରଣ କରାଗଲେ, ସେ ସେଥିରେ ଆପତ୍ତି କରୁ ନ ଥିଲେ ।

ଯାହାହେଉ, ରକେଟ୍‌ଟିଏ ପ୍ରସ୍ତୁତ ହୋଇଗଲା ।

୧୯୨୬ ମସିହା ମାର୍ଚ୍ଚ ୧୬ ତାରିଖ । ସେଦିନ ଥାଏ ମଙ୍ଗଳବାର । ବଡ଼ି ସକାଳୁ ଯାଇ ଗୋଡ୍ଡାର୍ଡ୍ କ୍ଲାର୍କ ପଦାର୍ଥବିଜ୍ଞାନ ଅଟ୍ଟାଳିକାରେ ଦେଖାକଲେ ହେନ୍‌ରି ସ୍ୟାକ୍‌ସ୍‌କୁ । ହେନ୍‌ରି ସ୍ୟାକ୍‌ସ୍ ଥିଲେ ତାଙ୍କର ଯନ୍ତ୍ରପାତି କାରିଗର । ଏହାର ବହୁବର୍ଷ ପୂର୍ବରୁ ଉକ୍ତ ପଦାର୍ଥବିଜ୍ଞାନ ବିଭାଗର ଚେୟାର୍‌ମ୍ୟାନ ରୂପେ ନିଯୁକ୍ତି ପାଇଥିଲେ ଗୋଡ୍ଡାର୍ଡ୍ । ସେଦିନ ତାଙ୍କର କ୍ଲାସ୍ ନେବାର ନ ଥାଏ । ଗୋଡ୍ଡାର୍ଡ ଏବଂ ସ୍ୟାକ୍‌ସ୍ ଗୋଟିଏ ଟ୍ରଲିରେ ନୂତନ ଭାବରେ ନିର୍ମିତ ରକେଟ୍ ତଥା ଆନୁଷଙ୍ଗିକ ଯନ୍ତ୍ରପାତିକୁ ଲଦିଲେ । ଗୋର୍ଡ୍ଡାର୍ଡ୍‌ଙ୍କର ଥିଲା ଦୁଇସିଟ୍ ବିଶିଷ୍ଟ କାର୍‌ଟିଏ । ଟ୍ରଲିଟିକୁ କାର୍ ପଛରେ ବାନ୍ଧି ଦିଆଗଲା । ଦୁଇଜଣଯାକ କାର୍‌ରେ ବସିଲେ । ଦୁଇଜଣଙ୍କ ସିଟ୍ ମଝିରେ ରଖିଲେ ଦୁଇଲିଟର ତରଳ ଅମ୍ଳଜାନ । ତରଳ ଅମ୍ଳଜାନ ବା ଲିକୁଇଡ୍ ଅକ୍‌ସିଜେନ୍ ସଂକ୍ଷେପରେ କୁହାଯାଏ 'ଲକ୍‌ସ୍' । ଏହା ଥିଲା ଖୁବ୍ ଦାମିକା । ଦାମ ହେଲେ ବି ସହଜରେ ମିଳିପାରୁ ନ ଥିଲା । ଆଜିର ପରୀକ୍ଷା ବିଫଳ ହେଲେ, 'ଲକ୍‌ସ୍' ପାଇବା ନିମନ୍ତେ ହୁଏତ ମାସାଧିକ କାଳ ଲାଗିଯାଇପାରେ ଗୋଡ୍ଡାର୍ଡ୍‌ଙ୍କୁ ।

ଖୁବ୍ ଶୀତ ପଡ଼ିଥାଏ ସେଦିନ । କାଲୁଆ ପବନ ବହୁଥାଏ । ରାସ୍ତାରେ ପଡ଼ିଥାଏ ବରଫର ଏକ ପତଳା ଆସ୍ତରଣ । ସାବଧାନତାର ସହ କାର୍ ଚଳେଇ ଏଫି ମାଉସୀଙ୍କ

ଫାର୍ମଆଡ଼କୁ ଅଗ୍ରସର ହେଉଥାନ୍ତି ଗୋଡ୍ଡାର୍ଡ୍ । ଦେହ ଖରାପ ହେବା ଡ଼ରରେ ଏବଂ ପତ୍ନୀ ଇସ୍‌ଥର୍‌ଙ୍କ ଅନୁରୋଧରେ ବାଧ୍ୟରେ ଗୋଡ୍ଡାର୍ଡ୍ ପିନ୍ଧିଥାନ୍ତି ଗୋଟିଏ ଲମ୍ବା କୋର୍ଟ, ବେକରେ ଗୁଡ଼େଇ ଥାନ୍ତି ପଶମ ମଫ୍‌ଲର୍, ମୁଣ୍ଡରେ ପଶମ ଟୋପି, ହାତରେ ଗ୍ଲୋଭସ୍ ଏବଂ ଜୋତା ଉପରେ ପୁଣି ରବର ଜୋତା ।

ଗୋଡ୍ଡାର୍ଡ୍ ଏବଂ ସ୍ୟାକ୍ସ୍ ଫାର୍ମରେ ପହଞ୍ଚି କିଛି ଦୂରରେ ଗାଡ଼ି ରଖିଲେ । ଦୁହେଁ ମିଶି ଟ୍ରଲି ଉପରୁ ଓହ୍ଲେଇ ପକେଇଲେ ବିରାଟ କାଠ ବାକ୍ସଟିଏ । କାଠ ବାକ୍ସଟିରେ ରହିଥାଏ ଯନ୍ତ୍ରପାତି, ରକେଟ୍ ମୋଟର୍, ପାଇପ୍ ଏବଂ ଇନ୍ଧନ ଟାଙ୍କି । ଅଧା ବାଟ ଟେକି ଟେକି ଏବଂ ଅଧାବାଟ ଘୋଷାରି ଘୋଷାରି ବନ୍ଧାକୋବି ଲଗା ଯାଇଥିବା ଏକ କ୍ଷେତ ପାଖରେ ରଖିଦେଲେ ବାକ୍ସଟିକୁ । ବାକ୍ସଖୋଲି ବାହାର କଲେ ପାଇପ୍‌ଗୁଡ଼ିକୁ । ପାଇପ୍‌ଗୁଡ଼ିକୁ ପୋତି ରକେଟ୍‌କୁ ଧରି ରଖିବାର ଫ୍ରେମ ତିଆରି କଲେ ସେମାନେ । ତା ପରେ ରକେଟ୍‌ଟିକୁ ଯଥା ସ୍ଥାନରେ ଅବସ୍ଥାପିତ କଲେ । ସକାଳ ବେଳାଟା ଏଇ କାମରେ ବିତିଗଲା ।

ରକେଟ୍‌ର ମୋଟର ଏବଂ ଗୋଜିଆମୁହଁ ବା ନଳର ଲମ୍ବଥିଲା ଦୁଇଫୁଟ । ତାର ପାଇପ୍ ଫ୍ରେମ୍‌କୁ ମିଶାଇ ରକେଟ୍‌ଟି ଥିଲା ଦଶଫୁଟ ଲମ୍ବା । ଆଧୁନିକ ରକେଟ୍‌ରେ ସିନା ଆବରଣ ଦିଆଯାଇଥାଏ, ହେଲେ ଗୋଡ୍ଡାର୍ଡ୍‌ଙ୍କ ରକେଟ୍‌ର ଅଧିକାଂଶ ଭାଗ ଥିଲା ଖୋଲା । କିନ୍ତୁ, ଏହି କ୍ଷୁଦ୍ର ଏବଂ ଅଶକ୍ତ ରକେଟ୍‌ଟିକୁ ପ୍ରସ୍ତୁତ କରିବାର ପଛୋଡ଼ରେ ଥିଲା ବର୍ଷ ବର୍ଷର ମେହେନତ ଏବଂ ପରୀକ୍ଷାନିରୀକ୍ଷା ।

ଇନ୍ଧନରୂପେ ସେଥିରେ ବ୍ୟବହୃତ ହୋଇଥିଲା ଗ୍ୟାସୋଲିନ୍ । ତରଳ ଅମ୍ଳଜାନ ବ୍ୟବହୃତ ହୋଇଥିଲା ଜାରକ ବା ଅକ୍ସିଡ଼ାଇଜର୍ ରୂପେ । ଦହନ ପ୍ରକୋଷ୍ଠ ଭିତରେ ଗ୍ୟାସୋଲିନ୍ ଏବଂ ତରଳ ଅମ୍ଳଜାନକୁ ଅନୁମୋଦିତ ହାରରେ ମିଶେଇବାର ପଦ୍ଧତି ବିକଶିତ କରିଥିଲେ ଗୋଡ୍ଡାର୍ଡ୍ । ରକେଟରେ ବିଭିନ୍ନ ବ୍ୟବସ୍ଥାରେ ପ୍ରତିଫଳିତ ହୋଇଥିଲା ଗୋଡ୍ଡାର୍ଡ୍‌ଙ୍କର ଅସାଧାରଣ ଉଦ୍‌ଭାବନୀ ଦକ୍ଷତା ।

ମଧ୍ୟାହ୍ନ ଲଗ୍ନ ଟପିଲା । ସବୁ କିଛି ଠିକ୍ ଠାକ୍ ଅଛି କି ନା ପୁଣିଥରେ ପରଖି ନେଲେ ଗୋଡ୍ଡାର୍ଡ୍ ଏବଂ ସହକର୍ମୀ ସ୍ୟାକ୍ସ୍ । ରକେଟ୍ ପ୍ରେରଣ ଫ୍ରେମ୍ ଉପରେ ଥୁଆ ହୋଇଥାଏ । ରକେଟ୍‌ଟି ସୂର୍ଯ୍ୟକିରଣ ପଡ଼ି ଝଲମଲ କରୁଥାଏ । କିଛି ଫୁଟ ଦୂରରେ ଠିଆ ହୋଇଥାଏ ଲୁହା ଚଦରର ବାଡ଼ । ରକେଟ୍ ପ୍ରେରଣ ବେଳେ ସେମାନଙ୍କୁ ସୁରକ୍ଷିତ ରଖିବା ପାଇଁ ତାହା ଉଦ୍ଦିଷ୍ଟ ଥିଲା ।

ଅପରାହ୍ନ ଗୋଟାଏ ବାଜିଲା ବେଳକୁ ଆସି ପହଞ୍ଚିଲେ ଇସ୍ଥର୍ ଗୋଡାର୍ଡ୍ । ତାଙ୍କ ସାଙ୍ଗରେ ଆସିଥାନ୍ତି କ୍ଲାର୍କ୍ ପଦାର୍ଥ ବିଜ୍ଞାନ ବିଭାଗର ସହକାରୀ ଅଧ୍ୟାପକ ପର୍ସି ରୂପେ । ଇସ୍ଥର୍‌ଙ୍କ କାନ୍ଧରେ ଝୁଲୁଥାଏ ଚଳଚିତ୍ର ପାଇଁ ଫଟୋ ଉଠା ନୂଆ କ୍ୟାମେରାଟିଏ । ପଛକୁ ନ ଘୂରେଇ ସେଥିରେ ସାତ ସେକେଣ୍ଡ ଧରି ଫଟୋ ଉଠା ଯାଇପାରେ । ପରେ ପରେ ଆସିଗଲେ ଏଫି ମାଉସୀ । ତାଙ୍କ ଫାର୍ମରେ ସେଦିନ ଉପସ୍ଥିତ ଥିବା ଅତିଥିମାନଙ୍କ ପାଇଁ ସେ ସାଙ୍ଗରେ ଧରି ଆସିଥାନ୍ତି ଗରମ କ୍ଷୀର ।

ସାଢ଼େ ଦୁଇଟା ବାଜିଲା । କାଉଣ୍ଟଡ଼ାଉନ୍ ବା ପଶ୍ଚାଦ୍‌ଗଣନା ପାଇଁ ପ୍ରସ୍ତୁତ ହୋଇଗଲେ ଗୋଡାର୍ଡ୍ ଏବଂ ତାଙ୍କର ସହାୟକ ଗୋଷ୍ଠୀ । ଗୋଟିଏ ଲମ୍ବ ଦଣ୍ଡର ଅଗ୍ର ଭାଗରେ ବନ୍ଧା ହୋଇଥିଲା ତୀବ୍ର ଅଗ୍ନିଶିଖା ପ୍ରୟୋଗ କରିବା ପାଇଁ ଉଦ୍ଦିଷ୍ଟ ବ୍ଲୋଟର୍ଚ୍ଚ୍ । ସର୍ବପ୍ରଥମେ ଏହା ସାହାଯ୍ୟରେ ଅଗ୍ନି ସଂଯୋଗକାରୀ ଉପକରଣର ଉପରିଭାଗକୁ ଉତ୍ତପ୍ତ କରାଇ ଚାଲିଲେ ସ୍ୟାକ୍ସ୍ । ଉପରିଭାଗଟି ଉତ୍ତପ୍ତ ହୋଇଯିବା ମାତ୍ରେ ଅଭ୍ୟନ୍ତରରେ ଥିବା ବାରୁଦରେ ନିଆଁ ଲାଗିଗଲା ଏବଂ ସୃଷ୍ଟି ହେଲା ଧୂମର ବାଦଲ । ସାଙ୍ଗେ ସାଙ୍ଗେ ଦହନ ପ୍ରକୋଷ୍ଠ ଭିତରକୁ ପ୍ରବେଶ କରେଇ ଦିଆଗଲା ଗ୍ୟାସୋଲିନ୍ ଏବଂ ତରଳ ଅମ୍ଳଜାନ । ଆଲ୍‌କହଲ୍-ବର୍ନର୍‌ରେ ରହିଥିବା ସ୍ପିରିଟ୍ ଭିଜା ତୁଳାରେ ନିଆଁ ଲଗେଇ ଦେବା ମାତ୍ରେ 'ହୁସ୍' ଭଳି ବିରାଟ ଶବ୍ଦ ସୃଷ୍ଟି ହେଲା ।

ଏହା ପୂର୍ବରୁ, ଗୋଡାର୍ଡ୍ ଏବଂ ପର୍ସି ରୂପେ ଲୁହାବାଡ଼ର ଆଢୁଆଳକୁ ଚାଲି ଯାଇଥିଲେ । ହେନ୍‌ରି ସ୍ୟାକ୍ସ୍ ବାଡ଼ ଆଡୁଆଳଆଡ଼େ ଦୌଡୁଥିବା ବେଳେ ରକେଟ୍‌ରେ ସାମାନ୍ୟ ଶବ୍ଦ ହୋଇ ରକେଟ୍‌ର ନଳ୍ଲ୍‌ରୁ ପ୍ରଚଣ୍ଡ ବେଗରେ ନିର୍ଗତ ହେବାରେ ଲାଗିଲା ଧଳା ରଙ୍ଗର ବାଷ୍ପ ଏବଂ ଅଗ୍ନିଶିଖା ।

ତା ପରେ, ତୀବ୍ର ଗର୍ଜନ ଛାଡ଼ି ରକେଟ୍‌ଟି ତାର ଆଧାରରୁ ବିଚ୍ୟୁତ ହୋଇଗଲା ଏବଂ ନୀଳ ଆକାଶ ବକ୍ଷକୁ ଲମ୍ଫ ପ୍ରଦାନ କଲା । ପ୍ରଥମେ ଏହାର ବେଗ ଥିଲା ଅପେକ୍ଷାକୃତ ଊଣା । ପରେ ପରେ ଅସ୍ୱାଭାବିକ ଭାବରେ ବୃଦ୍ଧି ପାଇଗଲା ରକେଟ୍‌ର ବେଗ । କିନ୍ତୁ, ମାତ୍ର ଅଢ଼େଇ ସେକେଣ୍ଡ୍ ପରେ ହଠାତ୍ ବନ୍ଦ ହୋଇଗଲା ତାର ସେହି ଭୀମନାଦ ଏବଂ ଧୂମ ଓ ଅଗ୍ନି ପ୍ରବାହ । ତଥାପି ଦ୍ରୁତବେଗରେ ଗତି କରି ରକେଟ୍‌ଟି ବାମ ଦିଗରେ ମୁହାଁଇଲା ଏବଂ ୧୮୪ ଫୁଟ୍ ଦୂରରେ ବରଫାବୃତ ଭୂଇଁ ଉପରେ ବାଡ଼େଇ ହୋଇ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ରକେଟ୍‌ର ଉଡ଼ାଣ ଥିଲା କ୍ଷଣସ୍ଥାୟୀ । କିନ୍ତୁ ଘଣ୍ଟାପ୍ରତି ପାଖାପାଖି ୯୦ କିଲୋମିଟର ବେଗରେ ଗତିକରି ତାହା ୪୧ ଫୁଟ ଉଚ୍ଚତାରେ

ପହଞ୍ଚିଯାଇଥିଲା । ହେଲେ ବଡ଼ ଦୁର୍ଭାଗ୍ୟର କଥା ଯେ ରକେଟ୍‌ଟି ଭୂଇଁ ଉପରେ ତାର ଆଧାର ଛାଡ଼ିବା ପୂର୍ବରୁ ଇସ୍‌ଥର୍‌ଙ୍କ କ୍ୟାମେରାରୁ ସାତ-ସେକେଣ୍ଡର ରିଲ୍ ସରିଯାଇଥିଲା । ତେଣୁ, ରକେଟ୍ ପ୍ରେରଣର ନିର୍ଦ୍ଦିଷ୍ଟ ବିରଳ ଛବି ଉତ୍ତୋଳନ କରିବା ସମ୍ଭବ ହୋଇପାରିଲାନି ।

ତଥାପି, ସେହି ସାମାନ୍ୟ ମୁହୂର୍ତ୍ତଟିରେ କ୍ଷୁଦ୍ର ରକେଟ୍‌ଟି ସୃଷ୍ଟି କରିଗଲା ଏକ ଇତିହାସ । ତରଳ-ଇନ୍ଧନ ରକେଟ୍‌ର ତାହା ଥିଲା ସର୍ବପ୍ରଥମ ସଫଳ ଉଡ଼ାଣ । ୧୯୦୩ ମସିହାରେ ବାୟୁଜାନରେ ଉଡ଼ିବାରେ ସର୍ବପ୍ରଥମ ସଫଳତା ହାସଲ କରିଥିଲେ ରାଇଟ୍ ଭ୍ରାତୃଦ୍ୱୟ । ପ୍ରଥମ ରକେଟ୍ ଉତ୍‌କ୍ଷେପଣ ଥିଲା ବାୟୁଯାନରେ ଆକାଶକୁ ଉଠିବାର ପ୍ରଥମ ସଫଳତା ଭଳି ଗୁରୁତ୍ୱପୂର୍ଣ୍ଣ । ଯେଉଁ ସ୍ଥାନରୁ ସେହି ପ୍ରଥମ ରକେଟ୍‌ଟି ଉତ୍‌କ୍ଷେପିତ ହୋଇଥିଲା, ଠିକ୍ ସେହି ସ୍ଥାନରେ ଉକ୍ତ ଦିନର ସ୍ମୃତି ବହନ କରି ଦଣ୍ଡାୟମାନ ହୋଇଛି ମୁଗୁନି ପଥରର ଫଳକଟିଏ । ସେଥିରେ ଖୋଦିତ ହୋଇଛି : ''ଡ଼କ୍ଟର ରବର୍ଟ, ଏଚ୍. ଗୋଡ୍ଡାର୍ଡ୍‌ଙ୍କ ଦ୍ୱାରା ପୃଥିବୀର ପ୍ରଥମ ତରଳ ଇନ୍ଧନ ରକେଟ୍‌ର ପ୍ରେରଣ ସ୍ଥଳ, ୧୬ ମାର୍ଚ୍ଚ, ୧୯୨୬'' ।

ସେଦିନର ସେହି ଶୀତୁଆ ଅପରାହ୍ଣରେ ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ, ସମସ୍ତଙ୍କୁ ଗ୍ରାସ କରିଥିଲା ନୈରାଶ୍ୟ । ପରେ ଇସ୍‌ଥର୍ ଗୋଡ୍ଡାର୍ଡ୍ କହିଥିଲେ, ''ରକେଟ୍‌ଟିରେ ଉତ୍‌କ୍ଷେପଣ ବେଳାରେ ଆମେ ଯେଉଁ ଚାରିଜଣ ସେଠାରେ ଉପସ୍ଥିତ ଥିଲୁ, କେହି ଜଣେ ହେଲେ ବି ଅଦୃଷ୍ଟବାଦୀ ନ ଥିଲୁ । ଆମେ ସମସ୍ତେ ଆଶା କରିଥିଲୁ ଯେ ରକେଟ୍‌ଟି ସିଧା ସଳଖ ଆକାଶାଭିମୁଖୀ ହେବ । କିନ୍ତୁ, ଘଟିଲା ଅନ୍ୟ ରକମ ।''

ମାର୍ଚ୍ଚ ୧୭ ତାରିଖର ଡ଼ାଇରିରେ ରବର୍ଟ ହଚିଙ୍ଗସ୍ ଗୋଡ୍ଡାର୍ଡ୍ ଲେଖିଥିଲେ, ''ରକେଟ୍‌ଟି ଉପରକୁ ଲମ୍ଫ ଦେଲା ବେଳେ ଏହା ଏକ ଐନ୍ଦ୍ରଜାଲିକ ବ୍ୟାପାର ବୋଲି ବୋଧ ହେଉଥିଲା । ସେ ସତେ ଯେପରି କହିଗଲା, ବହୁଦିନ ଧରି ଏଠି ଅଟକି ଗଲିଣି । ଏବେ ଚାଲିଲି ଅନ୍ୟ କେଉଁଠିକି !''

କିଛି ସପ୍ତାହ ପରେ, ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚିଉଟ୍‌ର ଡ଼କ୍ଟର ଆବୋର୍ଟଙ୍କୁ ଲେଖିଥିବା ରିପୋର୍ଟରେ ଗୋଡ୍ଡାର୍ଡ୍ ଉଲ୍ଲେଖ କରିଥିଲେ ଯେ ତରଳ-ଇନ୍ଧନ ରକେଟ୍‌ର ଯେ ପ୍ରାୟୋଗିକ କ୍ଷେତ୍ର ରହିଛି, ଏଥିରେ କୌଣସି ସନ୍ଦେହ ନାହିଁ । ଅର୍ଥର ଅଭାବ ଯୋଗୁଁ ସେ ଛୋଟ ରକେଟଟିଏ ତିଆରି କରିବାକୁ ବାଧ୍ୟ ହୋଇଥିଲେ ଏବଂ ତାହା ଖୁବ୍ କ୍ଷୁଦ୍ର ହୋଇଥିବାରୁ ମାତ୍ର ୪୧ ଫୁଟ ଉଚ୍ଚତା ପର୍ଯ୍ୟନ୍ତ ହିଁ ଉଠିପାରିଥିଲା ।

ସ୍ମିଥ୍‌ସୋନିଆନ୍ ପ୍ରତିଷ୍ଠାନ ଅଧିକ ଅନୁଦାନର ବ୍ୟବସ୍ଥା କରିପାରିଲେ, ଆହୁରି ଅଧିକ ଉଚ୍ଚତାରେ ପହଞ୍ଚି ପାରୁଥିବା ରକେଟ୍ ନିର୍ମାଣ କରିବା ତାଙ୍କ ପକ୍ଷେ ସମ୍ଭବ ହୋଇପାରିବ । ରକେଟ୍ ନିର୍ମାଣର ଗୁରୁତ୍ୱ ବିଷୟରେ ଦୃଷ୍ଟି ଆକର୍ଷଣ କରି ସେ ଲେଖିଥିଲେ, "ଜର୍ମାନୀ ରକେଟ୍‌ର ବିକାଶକୁ ଏକ ଜାତୀୟ କାର୍ଯ୍ୟକ୍ରମ ରୂପେ ଗ୍ରହଣ କରି ନେଲାଣି । ଏ ସଂପର୍କିତ ବିଶଦ ତଥା ବିସ୍ତୃତ ତଥ୍ୟ ଯୋଗାଇଦେବା ନିମନ୍ତେ ମୁଁ ଅନୁରୋଧ ପତ୍ରମାନ ପାଇଚାଲିଛି ।"

ରକେଟ୍ ଉତ୍‌କ୍ଷେପଣର ଏହି ସଫଳତା ଯେ ଭବିଷ୍ୟତ ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ତାହା ଗୋଡାର୍ଡ୍ ଭଲ ଭାବରେ ହୃଦୟଙ୍ଗମ କରିପାରିଥିଲେ । କିନ୍ତୁ, ୱାଶିଙ୍ଗଟନ୍‌ର ଅନ୍ୟ କେହି ଏହାର ଗୁରୁତ୍ୱ ଅନୁଭବ କରିପାରିନଥିଲେ । ଏପରିକି, ଗୋଡାର୍ଡ୍‌ଙ୍କୁ ଏହି କାର୍ଯ୍ୟ ପାଇଁ ଅନୁଦାନ ଯୋଗାଇ ଦେଇଥିବା ସ୍ମିଥ୍‌ସୋନିଆନ୍ ପ୍ରତିଷ୍ଠାନ ମଧ୍ୟ ଏଥିରେ ବିଶେଷ ପ୍ରଭାବିତ ହୋଇ ନ ଥିଲା । ବିଗତ ନଅବର୍ଷ ଧରି ସେମାନେ ଏଥିପାଇଁ ଆର୍ଥିକ ପୃଷ୍ଠପୋଷକତା କରି ଆସିଥିଲେ । ତେଣୁ, ରକେଟ୍‌ଟି ମାତ୍ର ୪୧ ଫୁଟ୍ ଉଚ୍ଚତାରେ ପହଞ୍ଚିବା ସେମାନଙ୍କୁ ସନ୍ତୁଷ୍ଟ କରି ପାରିଲା ନାହିଁ । ଅପେକ୍ଷାକୃତ ବଡ଼ ରକେଟ୍ ତିଆରି କରି ତାକୁ ଆହୁରି ଅଧିକ ଉଚ୍ଚତାରେ ନେଇ ପହଞ୍ଚେଇବା ନିମନ୍ତେ ସେମାନେ ଗୋଡାର୍ଡ୍‌ଙ୍କୁ ପ୍ରବର୍ତ୍ତେଇବାରେ ଲାଗିଲେ । ଏଥିପାଇଁ ସେମାନେ ସାମାନ୍ୟ ଅଧିକ ଅନୁଦାନ ଦେବା ନିମନ୍ତେ ରାଜି ହେଲେ ସତ, କିନ୍ତୁ ଗୋଡାର୍ଡ୍‌ଙ୍କ ଆବଶ୍ୟକତା ଅନୁସାରେ ଅର୍ଥ ଯୋଗାଇ ପାରିବେନି ବୋଲି ଜଣାଇଦେଲେ । କିନ୍ତୁ, ଗୋଟିଏ ବର୍ଷ ଭିତରେ ଏଥିରେ ସଫଳତା ହାସଲ କରି ପକେଇବା ପାଇଁ ଉତ୍କଣ୍ଠିତ ହୋଇ ଉଠିଥିଲେ ସେମାନେ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଇସ୍‌ଥର୍ ଗୋଡାର୍ଡ୍ ନିଜ ସ୍ୱାମୀଙ୍କର ଏହି ଉଦ୍ୟମରେ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲେ । ସେ ସ୍ୱୀକାର କରିଥିଲେ, "ଡ଼କ୍ଟର୍ ଗୋଡାର୍ଡ୍‌ଙ୍କ ଉତ୍ତେଜନାପୂର୍ଣ୍ଣ ମାନସିକ ସ୍ଥିତିରେ ଭାଗୀଦାର ହେବା ପୂର୍ବରୁ ରକେଟ୍ ଆଧାରମୁକ୍ତ ହୋଇ ଆକାଶରେ ପହଞ୍ଚିସାରିଥିଲା । ତଥାପି, ସେଦିନର ସେହି ପଛକଥାକୁ ମନେ ପକେଇଲେ ମୋତେ ଲାଗେ ଯେ ସେଦିନର ରକେଟ୍ ଉତ୍‌କ୍ଷେପଣ ଥିଲା ପୃଥିବୀର ସର୍ବାଧିକ ମନୋରମ ଦୃଶ୍ୟ !"

ସ୍ୱାମୀଙ୍କୁ ସବୁ ପ୍ରକାରର ସହାୟତା ଯୋଗାଇ ଚାଲିଥିଲେ ଇସ୍‌ଥର୍ । ଗୋଡାର୍ଡ୍ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ହୋଇଥିଲେ ତାଙ୍କ ଆଈଙ୍କ ପୁରୁଣା ବାସଗୃହଟିକୁ । ବିବାହ ପରେ ଇସ୍‌ଥର୍ ତାକୁ ଏକ ମନୋରମ ଗୃହରେ ପରିଣତ କରିଦେଲେ । ବିବର୍ଣ୍ଣ

କାନ୍ଥରେ ଲଗେଇଦେଲେ ନୂଆ ରଙ୍ଗ । ଝରକା ଏବଂ ଦରଜାରେ ଝୁଲେଇ ଦେଲେ ଆକର୍ଷଣୀୟ ପରଦା । ଟେବୁଲ୍, ଚଉକି ଏବଂ ସୋଫା ଉପରେ ଦାମିକା କପଡ଼ା ପକେଇଦେଲେ । ଘରେ ଗଦା ହୋଇଥିବା ଆଳିମାଳି କାଗଜ, ପୁରୁଣା ଭଙ୍ଗାରୁଜା ଜିନିଷପତ୍ର ଏବଂ ପୁରୁଣା ଲୁଗାପଟା ଗୁଡ଼ିକୁ ଫିଙ୍ଗି ଦେଲେ । ଗୋଡ୍ଡାର୍ଡ୍‌ଙ୍କ ପଢ଼ାପଢ଼ି ନିମନ୍ତେ ପଢ଼ା ଟେବୁଲ୍ ଓ ଚଉକି ପକେଇ ଦେଲେ । ଘରେ ଝାଡୁମାରିବା, ଘରର ଚଟାଣ ପୋଛିବା, ରୋଷେଇବାସ କରିବା, ଦୋକାନ ସଉଦା କିଣିବା ଆଦି ଘରର ଯାବତୀୟ କାମର ଦାୟିତ୍ୱ ନେଇଗଲେ ସେ । କଣ୍ଟିକାଣ୍ଟି ଖର୍ଚ୍ଚ କରିବା ଦ୍ୱାରା ଯେଉଁ ଅର୍ଥ ସଞ୍ଚୟ ହୋଇପାରିଲା, ତାହା ଗୋଡ୍ଡାର୍ଡ୍‌ଙ୍କ ଗବେଷଣା କାମରେ ବ୍ୟୟିତ ହେଲା ।

୧୯୨୬ ମସିହା ମାର୍ଚ୍ଚ ମାସର ସେହି ଐତିହାସିକ ରକେଟ୍ ଉତ୍‌କ୍ଷେପଣ ପରେ ସ୍ୱାମୀଙ୍କ ପାଇଁ ସେକ୍ରେଟାରୀ, ଫଟୋ ଉତ୍ତୋଳନକାରୀ, ରକେଟ୍ ପରୀକ୍ଷଣର ସହକାରୀ ଆଦି ନାନା ଭୂମିକାରେ ତାଙ୍କୁ କାମ କରିବାକୁ ପଡ଼ିଲା । ଏପରିକି ରକେଟ୍ ପରୀକ୍ଷଣ ବେଳେ ଆଖପାଖର ବଣବୁଦାରେ ନିଆଁ ଲାଗିଗଲେ, ତାକୁ ଲିଭେଇବା କାମ ମଧ କରିବାକୁ ପଡୁଥିଲା ଇସ୍‌ଥର୍‌ଙ୍କୁ । ଗୋଡ୍ଡାର୍ଡ୍‌ଙ୍କ କାଗଜ ପତ୍ର, ବୈଜ୍ଞାନିକ ପ୍ରବନ୍ଧ ଓ ପରୀକ୍ଷଣ ସଂକ୍ରାନ୍ତ ରେକର୍ଡ ଇତ୍ୟାଦିକୁ ସାଇତି ରଖୁଥିଲେ ସେ । ୧୯୨୮ ମସିହା ସେପ୍ଟେମ୍ବର ମାସ ବେଳକୁ ହଚିଙ୍ଗସ୍ ଗୋଡ୍ଡାର୍ଡ୍‌ଙ୍କ ପିତା ନାହୁମ୍ ଗୋଡ୍ଡାର୍ଡ୍‌ଙ୍କ ବୟସ ୭୦ । ସେତେବେଳେ ତାଙ୍କୁ କର୍କଟ ରୋଗ କବଳିତ କରି ସାରିଥାଏ । ମରିବାର ଅଳ୍ପ ଦିନ ପୂର୍ବରୁ ସେ ତାଙ୍କର ଏହି ଅବାଗିଆ ପୁତ୍ରଟିର ଭାର ସମର୍ପି ଦେଇଥିଲେ ଇସ୍‌ଥର୍‌ଙ୍କୁ । ଶ୍ୱଶୁରଙ୍କର ଉକ୍ତ ମୃତ୍ୟୁକାଳୀନ କଥା କେଢପଦରେ ଇସ୍‌ଥର୍ ଖୁବ୍ ଅଭିଭୂତ ହୋଇପଡ଼ିଥିଲେ । ତାଙ୍କ ଆଖିରେ ଲୁହ ଜକେଇ ଆସିଥିଲା । ଗୋଡ୍ଡାର୍ଡ୍‌ଙ୍କ ପାଇଁ ସବୁକିଛି ଉତ୍ସର୍ଗ କରିଦେବା ପାଇଁ ମନେ ମନେ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ ଇସ୍‌ଥର୍ ।

ଦୈନନ୍ଦିନ ଜୀବନର ସମସ୍ତ ଦାୟିତ୍ୱ ଇସ୍‌ଥର୍ ଗ୍ରହଣ କରି ନେବାରୁ ଅବସର ଉପଭୋଗ କରିବା ନିମନ୍ତେ ଗୋଡ୍ଡାର୍ଡ୍‌ଙ୍କୁ ଅଧିକ ସମୟ ମିଳିଗଲା । ରକେଟ୍ ଗବେଷଣା କାର୍ଯ୍ୟରୁ ଫୁର୍‌ସତ୍ ମିଳିଲେ ସେ ମଜି ଯାଉଥିଲେ ପିଆନୋ ବଜେଇବାରେ ଏବଂ ଚିତ୍ର ଆଙ୍କିବାରେ । ବେଳେ ବେଳେ ପତିପତ୍ନୀ ସିନେମା ଦେଖିବାକୁ ବାହାରି ଯାଉଥିଲେ । ବିଶେଷକରି ହାସ୍ୟରସ ସମ୍ବଳିତ ସିନେମାଗୁଡ଼ିକ ଥିଲା ସେମାନଙ୍କର ବେଶୀ ପ୍ରିୟ । ଗୋଡ୍ଡାର୍ଡ୍‌ଙ୍କର ଲାଜକୁଳା ସ୍ୱଭାବ ଧୀରେ ଧୀରେ ମିଳେଇ ଗଲା । ଗୋଡ୍ଡାର୍ଡ୍ ଦମ୍ପତି ସହକର୍ମୀମାନଙ୍କ ସହ ସାମାଜିକ ସଂପର୍କ ରଖିବା ଆରମ୍ଭ କରିଦେଲେ । ଭୋଜିଭାତରେ ଯୋଗ ଦେଲେ ।

ସ୍ମିଥ୍‌ସୋନିଆନ୍ ପ୍ରତିଷ୍ଠାନ ତରଫରୁ ବଡ଼ ରକେଟ୍ ପ୍ରସ୍ତୁତ କରିବା ନିମନ୍ତେ ଚାପ ଲାଗି ରହିଥାଏ । ପୂର୍ବ ରକେଟ୍‌ଠାରୁ ୨୦ ଗୁଣ ବଡ଼ ଏକ ରକେଟ୍‌ର ନକ୍‌ସା ତିଆରି ହୋଇଗଲା । ତାର ଉତ୍‌କ୍ଷେପଣ ପାଇଁ ଦରକାର ପଡୁଥିଲା ୬୦ ଫୁଟ ଉଚ୍ଚ ଉତ୍‌କ୍ଷେପଣ ଆଧାର । ବଡ଼ ରକେଟ୍‌କୁ ଉତ୍‌କ୍ଷେପଣ ସ୍ଥଳ ପର୍ଯ୍ୟନ୍ତ ବୋହିନେବା ଏଂବ ଯଥା ସ୍ଥାନରେ ଅବସ୍ଥାପିତ କରିବାରେ ଉପୁଜିଥିଲା ସମସ୍ୟା । ଏଥିପାଇଁ ଅଧିକାଂଶ ସମୟରେ ଘୋଡ଼ାଗାଡ଼ି ଏବଂ ୱାଗନ୍ ଆବଶ୍ୟକ ପଡୁଥିଲା । ଏଫି ମାଉସୀଙ୍କ ଫାର୍ମକୁ ଯିବା ଆସିବା କରିବା ଏବଂ ଯନ୍ତ୍ରପାତି ଓ ରକେଟ୍ ଇତ୍ୟାଦି ନେବା ଆଣିବା କରିବା ଥିଲା ଏକ ନିତିଦିନିଆ ବ୍ୟାପାର । ପଡ଼ାପଡ଼ୋଶୀମାନେ ଏହା ଦେଖି ଦେଖି ତାଙ୍କର ଦେହସୁହା ହୋଇଗଲା । ତେଣୁ, ଗୋଡାର୍ଡ୍‌ଙ୍କ କାରବାରକୁ କେହି ଗୁରୁତ୍ୱ ଦେଉନଥିଲେ । ସେମାନଙ୍କର ବିଦ୍ରୂପ ଏବଂ ପରିହାସମୂଳକ ମନ୍ତବ୍ୟକୁ ମଧ୍ୟ ଭ୍ରୂକ୍ଷେପ କରୁ ନ ଥିଲେ ଗୋଡାର୍ଡ୍ । ଏଥିପାଇଁ ତାଙ୍କ ପାଖରେ ସମୟ ମଧ୍ୟ ନ ଥିଲା ।

ରାତି ପରେ ରାତି ଅନିଦ୍ରା ହୋଇ, ରକେଟ୍‌ର ଡ଼ିଜାଇନ୍ ପରିବର୍ତ୍ତନରେ ଲାଗିପଡ଼ିଥିଲେ ସେ । ସମସ୍ତ ପରୀକ୍ଷଣ ବିଫଳତାରେ ପର୍ଯ୍ୟବେସିତ ହେଲା । ପ୍ରତ୍ୟେକ ଥର ଘଟୁଥିଲା କୌଣସି ନା କୌଣସି ଅଘଟଣ । ତଥାପି ବିଫଳତାର କାରଣଗୁଡ଼ିକୁ ଠିକିନିଖି ଭାବରେ ଲେଖି ରଖିବା ଥିଲା ତାଙ୍କର ଅଭ୍ୟାସ ।

୧୯୨୭ ମସିହା ସେପ୍ଟେମ୍ବର ମାସରେ ଗୋଡାର୍ଡ୍ ସ୍ଥିର କଲେ ଯେ ଏତେ ଅର୍ଥ ଶ୍ରାଦ୍ଧ କରି ଏତେ ବଡ଼ ରକେଟ୍ ପ୍ରସ୍ତୁତ କରିବା ବର୍ତ୍ତମାନ ପାଇଁ ସମ୍ଭବ ହେବନାହିଁ । ତେଣୁ, ୧୯୨୬ ମସିହାରେ ଉତ୍‌କ୍ଷେପିତ ରକେଟ୍‌ଠାରୁ ୪ ଗୁଣ ବଡ଼ ଏକ ରକେଟ୍ ପ୍ରସ୍ତୁତି ପାଇଁ ଉଦ୍ୟମ ଆରମ୍ଭ କରିଦେଲେ ସେ । ଏହା ସତ୍ତ୍ୱେ ବିଫଳତା ତାଙ୍କର ପିଛା ଛାଡ଼ିଲାନି । କିନ୍ତୁ, ପ୍ରତ୍ୟେକ ବିଫଳତା ହିଁ ତାଙ୍କ ପାଇଁ ଥିଲା ଏକ ଏକ ମାର୍ଗଦର୍ଶକ । ବିଫଳତା ଉପରେ ବିଜୟ ଲାଭ କରିବା ନିମନ୍ତେ ତାହା ଯଥେଷ୍ଟ ସହାୟକ ହୋଇପାରିଥିଲା ।

ସର୍ବଶେଷରେ ସାଢ଼େ ଏଗାର ଫୁଟ ଦୀର୍ଘ ବିଶିଷ୍ଟ ରକେଟ୍‌ଟିଏ ପ୍ରସ୍ତୁତ ହୋଇଗଲା । ଇନ୍ଧନକୁ ଛାଡ଼ି ଏହାର ଓଜନ ଥିଲା ପାଖାପାଖି ୧୮ କିଲୋଗ୍ରାମ । ସେଥିରେ ଖଞ୍ଜା ଯାଇଥିଲା ଆନେରଏଡ୍ ଚାପମାନ ଯନ୍ତ୍ର, ତାପମାନ ଯନ୍ତ୍ର ଏବଂ ଅନ୍ୟକେତେକ ଉପକରଣ । ରକେଟ୍‌ଟି ସର୍ବୋଚ୍ଚ ସ୍ଥାନରେ ପହଞ୍ଚିଗଲା ପରେ ମନକୁ ମନ ଖୋଲିଯାଉଥିବା ପାରାଚ୍ୟୁଟ୍‌ଟିଏ ସଂଯୁକ୍ତ ହୋଇଥିଲା ରକେଟ୍‌ରେ । ପାରାଚ୍ୟୁଟ୍

ଖୋଲିବା ଫଳରେ କ୍ୟାମେରାଟିଏ ସକ୍ରିୟ ହୋଇପଡ଼ି ପାଣିପାଗ ଯନ୍ତ୍ରପାତି, ଚାପମାନ ଯନ୍ତ୍ର, ତାପମାନ ଯନ୍ତ୍ର, ଆଲିମୋମିଟର ଆଦି ଯନ୍ତ୍ର ଦ୍ୱାରା ସୂଚିତ ସଂଖ୍ୟାର ଫଟୋ ଉଠେଇ ନେବ । ତା ପରେ ସମସ୍ତ ଉପକରଣକୁ ବହନ କରି ଭୂପୃଷ୍ଠରେ ଅବତରଣ କରିବ ପାରାଚ୍ୟୁଟ୍‌ଟି ।

୧୯୨୯ ମସିହା ଜୁଲାଇ ୧୭ ତାରିଖର ସକାଳ । ରବର୍ଟ ଗୋଡ୍ଡାର୍ଡ୍ ବାହାରି ପଡ଼ିଲେ ଏଫି ମାଉସୀଙ୍କ ଫାର୍ମକୁ । ସାଥିରେ ହେନ୍‌ରି ସ୍ୟାକ୍‌ସ୍ ଏବଂ ଇସ୍‌ଥର୍‌ଙ୍କ ଭାଇ ଆଲ୍‌ବର୍ଟ କିସ୍‌କ୍ । ଲରେନ୍‌ସ ମନସୁର ଏବଂ ପର୍ସିରୁପେ ମଧ୍ୟ ଥିଲେ ସାଙ୍ଗରେ । ୬୦ ଫୁଟ ଉଚ୍ଚ ଟାଓ୍ୱାର୍ ଖଞ୍ଜିବାରେ ବିତିଗଲା ପୂର୍ବାହ୍ନଟା । ଇସ୍‌ଥର୍ ସିଲେଇ କରିଥିଲେ ରକେଟ୍‌ର ପାରାଚ୍ୟୁଟକୁ । ଉତ୍‌କ୍ଷେପଣର ଚିତ୍ର ଉତ୍ତୋଳନ କରିବା ନିମନ୍ତେ ସେଠାରେ ମଧ୍ୟ ଉପସ୍ଥିତି ରହିଥିଲେ ଇସ୍‌ଥର୍ । କାନ୍ଧରେ ଝୁଲେଇ ଥିଲେ ନୂଆ କୋଡ଼ାକ୍ ମୁଭି କ୍ୟାମେରାଟିଏ ।

ଅପରାହ୍ନ ଦୁଇଟାବେଳେ ସମସ୍ତେ ପ୍ରସ୍ତୁତ ହୋଇଗଲେ । ଗୋଡ୍ଡାର୍ଡ୍ ସଙ୍କେତ ଦେବାମାତ୍ରେ ଆଲ୍‌କହଲ୍ ଷ୍ଟୋଭ୍‌ରେ ଅଗ୍ନି ସଂଯୋଗ କରିଦେଲେ ହେନ୍‌ରି ସ୍ୟାକ୍‌ସ୍ । ରକେଟ୍‌ଟି ଉତ୍‌କ୍ଷେପିତ ହୋଇଗଲା । ଏହା ଥିଲା ଏକ ସଫଳ ଉତ୍‌କ୍ଷେପଣ । ସାଢ଼େ ଅଠର ସେକେଣ୍ଡ ଭିତରେ ରକେଟ୍‌ଟି ୯୦ ଫୁଟ ଉଚ୍ଚତାରେ ପହଞ୍ଚିପାରିଥିଲା । ତା ପରେ ଦକ୍ଷିଣ ମୁହାଁ ହୋଇ ଟାଓ୍ୱାର୍‌ଠାରୁ ୧୭୧ ଫୁଟ ଦୂରରେ ଭୂମି ଉପରେ ପଡ଼ିଗଲା ।

ଧୂଆଁ ଆଉ ନିଆଁ ଉଦ୍‌ଗୀରଣ କରି ଭୀମଗର୍ଜନ ସହ ରକେଟ୍‌ଟି ଆକାଶମୁଖୀ ହେଲାବେଳେ ଜୁଲାଇ ମାସର ସେହି ଅପରାହ୍ନର ନିସ୍ତବ୍‌ଧତା ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଉକ୍ତ ଶବ୍ଦରେ ତାଳ ମିଳେଇଲା ଗ୍ୟାସୋଲିନ୍ ଟାଙ୍କି ଫାଟି ବିସ୍ଫୋରିତ ହୋଇ ଯିବାର ଶବ୍ଦ । ପାରାଚ୍ୟୁଟ୍ ଖୋଲିଲା ନାହିଁ । ଅଧିକ ତାପ ସହି ନ ପାରି ଖଣ୍ଡବିଖଣ୍ଡିତ ହୋଇଯାଇଥିଲା ତାପମାନ ଯନ୍ତ୍ର । କିନ୍ତୁ, କାମ କରି ଚାଲିଥିଲା ଚାପମାନ ଯନ୍ତ୍ର ଏବଂ କ୍ୟାମେରା ।

ରକେଟ୍‌ର ଖଣ୍ଡବିଖଣ୍ଡିତ ଅଂଶ ଗୁଡ଼ିକୁ ଖୋଜି ଗୋଟେଇବାରେ ଗୋଡ୍ଡାର୍ଡ୍ ଏବଂ ସହକାରୀମାନେ ବ୍ୟସ୍ତଥିବା ବେଳେ ସେମାନେ ଶୁଣିପାରିଲେ ସାଇରେନ୍ ବାଜିବାର ଶବ୍ଦ । ସେମାନେ ମୁଣ୍ଡଟେକି ଚାହିଁଲେ । ଗୋଟିଏ ପୋଲିସ୍ ଗାଡ଼ି, ଦୁଇଟି ଆମ୍ବୁଲାନ୍‌ସ୍ ଏବଂ ଆହୁରି ଅନେକ ଗାଡ଼ି ପଛକୁ ପଛ ରହି ସେମାନଙ୍କର ଆଡ଼କୁ ମାଡ଼ି ଆସୁଥିବାର ଦେଖିବାକୁ ପାଇଲେ ସେମାନେ ।

ଏଫି ମାଉସୀଙ୍କ ଫାର୍ମ ପାଖରେ ରହୁଥିବା ପଡ଼ୋଶୀମାନେ ଏକ ବିମାନ ଦୁର୍ଘଟଣା ଘଟିଯିବା ସଂପର୍କରେ ପୋଲିସ୍‌କୁ ଜଣାଇ ଦେବା ଫଳରେ ସେମାନେ ଧାଇଁ ଆସିଥିବାର ଜାଣିବାକୁ ମିଳିଲା । ବିମାନ ଦୁର୍ଘଟଣା ନୁହେଁ, ରକେଟ୍ ଉତ୍‌କ୍ଷେପଣ ପରୀକ୍ଷଣ ବୋଲି ପୋଲିସ୍ ଅଫିସର୍‌ଙ୍କୁ ଜଣେଇ, ଏହି ଘଟଣାକୁ ଯଥାସମ୍ଭବ ଗୋପନ ରଖିବା ନିମନ୍ତେ ସେମାନଙ୍କୁ ଅନୁରୋଧ ଜଣେଇଥିଲେ ଗୋଡାର୍ଡ୍ । କିନ୍ତୁ, ସେହି ମୁହୂର୍ତ୍ତରେ ଆସି ପହଞ୍ଚିଗଲେ ଦୁଇଜଣ ସାମ୍ବାଦିକ ।

ସାମ୍ବାଦିକମାନେ ଲାଗି ପଡ଼ିଲେ ନିଜ କାମରେ । ଉତ୍‌କ୍ଷେପଣ ଟାୱାର୍, ଲୌହ ଫଳକ ଦ୍ୱାରା ଆବୃତ ନିରାପଦ ଆଶ୍ରୟ ସ୍ଥଳ, ରକେଟ୍‌ର ଭଗ୍ନାଂଶ ଆଦିର ମପାଚୁପା କରି ଫଟୋ ଉଠେଇଲେ । ତେବେ ଗୋଡାର୍ଡ୍ ସେମାନଙ୍କୁ ଅବଗତ କରାଇଥିଲେ ଯେ 'ଚନ୍ଦ୍ର ଅଭିଯାନ ପାଇଁ ଏହି ଉଦ୍ୟମ ଅଭିପ୍ରେତ ନୁହେଁ । ରକେଟ୍ ଉତ୍‌କ୍ଷେପଣ ବେଳେ ଭୀଷଣ ଶବ୍ଦ ଜାତ ହେବା ଅତି ସାଧାରଣ କଥା । ପରୀକ୍ଷଣଟି ସଂପୂର୍ଣ୍ଣ ସଫଳ ହୋଇଛି । ବାୟୁମଣ୍ଡଳରେ କିଛି ବିସ୍ଫୋରଣ ଘଟିନି । ଭୂଇଁ ଉପରେ ସାମାନ୍ୟ କ୍ଷତ ହେବା ବ୍ୟତୀତ ଅନ୍ୟ କୌଣସି କ୍ଷୟକ୍ଷତି ଘଟିନାହିଁ ।'

ସାମ୍ବାଦିକଦ୍ୱୟଙ୍କ ଉପରେ ଗୋଡାର୍ଡ୍‌ଙ୍କର ଏହି ସତ୍ୟ କୈଫିୟତର କିଛି ପ୍ରଭାବ ପଡ଼ିଲାନି । ସେହିଦିନ ସଂଧ୍ୟାରେ 'ଓର୍‌ସେଷ୍ଟର୍ ଇଭିନିଙ୍ଗ୍ ପୋଷ୍ଟ' ନାମକ ସମ୍ବାଦ ପତ୍ରରେ ପ୍ରକାଶ ପାଇଲା ନିମ୍ନଲିଖିତ ସମ୍ବାଦଟି ।

କ୍ଲାର୍କ ପଦାର୍ଥ ବିଜ୍ଞାନ ବିଭାଗର ପ୍ରଫେସର ଗୋଡାର୍ଡ୍ ନିଜର ଚନ୍ଦ୍ର ଅଭିଯାନ ରକେଟ୍ ଉତ୍‌କ୍ଷେପଣ କଲାବେଳେ ବିରାଟ ବିସ୍ଫୋରଣ ଘଟିଲା । ଜଣେ ମହିଳା ଏହାକୁ ବିମାନ ଦୁର୍ଘଟଣା ବୋଲି ଧରିନେଇଥିଲେ । ଦୁର୍ଘଟଣାରେ ହତାହତ ହୋଇଥିବା ବ୍ୟକ୍ତିମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଅଉବର୍ନଠାରେ ଆମ୍ବୁଲାନ୍‌ସ ଯାଇ ପହଞ୍ଚିଯାଇଥିଲା । ସେଠାରେ କ୍ଲାର୍କର ପ୍ରଫେସର୍ ଏବଂ ତାଙ୍କର ସହକାରୀମାନେ ରକେଟ୍ ଉପରେ ପରୀକ୍ଷା ନିରୀକ୍ଷା କରିଥିବାର ଦେଖିବାକୁ ମିଳିଲା ।

ତା ପରଦିନ 'ବୋଷ୍ଟୋନ୍ ଗ୍ଲୋବ୍' ନାମକ ଖରବକାଗଜରେ ବାହାରିଲା -

'ଚନ୍ଦ୍ର ଅଭିଯାନ ରକେଟ୍ ପରୀକ୍ଷଣ ବେଳେ ସ୍ଥାନୀୟ ଅଧିବାସୀମାନେ ଆତଙ୍କିତ ହୋଇପଡ଼ିଛନ୍ତି । ବିସ୍ଫୋରଣ ଯୋଗୁଁ ରକେଟ୍‌ର ଧାତବ ଯନ୍ତ୍ରାଂଶ ଚାରିଆଡ଼େ ବିଛାଡ଼ି ହୋଇପଡ଼ିଛି । ଏହାକୁ ଏକ ବିମାନ ଦୁର୍ଘଟଣା ଭାବି ଆରମ୍ଭ ହୋଇଯାଇଛି ଅନୁସନ୍ଧାନ

କାର୍ଯ୍ୟ । କିନ୍ତୁ, ତାହା ଗୋଡ୍ଡାର୍ଡ୍‌ଙ୍କ ରକେଟ୍ ପରୀକ୍ଷଣର ପରିଣତି ବୋଲି ଅବଶେଷରେ ଜଣାପଡ଼ିଛି ।'

ହଚିଙ୍ଗସ୍ ଗୋଡ୍ଡାର୍ଡ୍ ଗଣମାଧ୍ୟମର ଆକର୍ଷଣ ବିନ୍ଦୁ ପାଲଟିଗଲେ । ସାମ୍ବାଦିକ, ଦର୍ଶକ, ପ୍ରକାଶକ ଇତ୍ୟାଦିଙ୍କର ସୁଅ ଛୁଟିଲା ଗୋଡ୍ଡାର୍ଡଙ୍କ ପାଖକୁ ଏବଂ ଏଫି ମାଉସୀଙ୍କ ଫାର୍ମକୁ । ଏଥିରେ ଖୁବ୍ ବିଚଳିତ ହୋଇପଡ଼ିଲେ ଗୋଡ୍ଡାର୍ଡ୍ । ସେତିକିରେ ମଧ୍ୟ ତାଙ୍କ ଦୁର୍ଦ୍ଦଶାର ଅନ୍ତ ହେଲାନାହିଁ । ମାସାଚୁସେଟ୍‌ସ୍‌ର ଅଗ୍ନିଶମ ସେବା ସଂସ୍ଥା ଅଧିକାରୀ ସତର୍କ ହୋଇଗଲେ । ଗୋଡ୍ଡାର୍ଡ୍‌ଙ୍କ ରକେଟ୍ ପରୀକ୍ଷଣ ଯୋଗୁଁ ନିଆଁଲାଗି ଧନଜୀବନ ନଷ୍ଟ ହେବାର ସମ୍ଭାବନା ଥିବାରୁ ଆତଙ୍କିତ ସ୍ଥାନୀୟ ଅଧିବାସୀ ଏହି ପରୀକ୍ଷଣକୁ ବେଆଇନ୍ ଘୋଷଣା କରିବା ନିମନ୍ତେ ଦାବି ଉପସ୍ଥାପନ କଲେ । ଅଗ୍ନିଶମ ସେବାସଂସ୍ଥା ଦାୟିତ୍ୱରେ ଥିବା ମାର୍ଶାଲ୍ ନିଲ୍ ସେମାନଙ୍କ ଦାବି ନିକଟରେ ମୁଣ୍ଡ ନୁଆଁଇ ଆଦେଶ ଜାରିକଲେ ଯେ ମାସାଚୁସେଟ୍‌ସ୍ ଅଞ୍ଚଳରେ ଗୋଡ୍ଡାର୍ଡ୍ ଏହି ବିପଦ୍‌ଜନକ ପରୀକ୍ଷଣ କରିପାରିବେ ନାହିଁ । ଗୋଡ୍ଡାର୍ଡ୍ ତାଙ୍କର ଏହି ପରୀକ୍ଷଣ ଚାଲୁ ରଖିବାକୁ ଚାହିଁଲେ ସେ ଏକ ନୂତନ ତଥା ଗୋପନୀୟ ସ୍ଥାନର ସନ୍ଧାନ ନେବା ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ନ ଥିଲା !

ଯାହାହେଉ, ସଂପ୍ରତି ମହାକାଶ ଯାତ୍ରାରେ ଯେଉଁ ପ୍ରଗତି ସାଧିତ ହୋଇଛି, ତା'ର ଭିତ୍ତି ସ୍ଥାପନ କରିଯାଇଥିଲେ ରବର୍ଟ ହଚିଙ୍ଗସ୍ ଗୋଡ୍ଡାର୍ଡ୍ । ଏ କ୍ଷେତ୍ରରେ ଅସାଧାରଣ କୃତିତ୍ୱର ଅଧିକାରୀ ହେବା ସତ୍ତ୍ୱେ ସଙ୍ଗୀବିହୀନ ହୋଇ ଅହରହ ସଂଗ୍ରାମ କରିବାକୁ ପଡ଼ିଥିଲା ତାଙ୍କୁ । ଉପହାସିତ ହୋଇଥିଲେ ବାରମ୍ବାର ।

ଗଳା କର୍କଟ ରୋଗରେ ଆକ୍ରାନ୍ତ ହୋଇ ୧୯୪୫ ମସିହା ଅଗଷ୍ଟ ୧୦ ତାରିଖରେ ସେ ମୃତ୍ୟୁବରଣ କରିଥିଲେ । ସେତେବେଳକୁ ତାଙ୍କୁ ହୋଇଥିଲା ମାତ୍ର ୬୩ ବର୍ଷ ।



# ନିଲ୍ସ୍ ବୋହର୍ଙ୍କ ଚରିଆରେ

ନିଲସ୍ ବୋହର୍ ଥିଲେ ଜଣେ ଖ୍ୟାତନାମା ପଦାର୍ଥ ବିଜ୍ଞାନୀ । ୧୯୨୨ ମସିହାରେ ପଦାର୍ଥ ବିଜ୍ଞାନ ଶାଖାରେ ସେ ନୋବେଲ୍ ପୁରସ୍କାର ପାଇଥିଲେ । ସେହି ବର୍ଷ ଜନ୍ମ ନେଇଥିଲେ ତାଙ୍କ ପୁଅ ଆଗେ ବୋହର୍ । ଆଗେ ବୋହର୍ ମଧ୍ୟ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ଲାଭ କରିଥିଲେ । ଥଟ୍ଟା ମଜା କରିବାରେ ବାପପୁଅ ଥିଲେ ଖୁବ୍ ଧୁରନ୍ଧର । ନିଲ୍ସ୍ ବୋହରଙ୍କର ଚାରିଜଣ ଛାତ୍ର ନୋବେଲ୍ ପୁରସ୍କାର ପାଇବାର ଗୌରବ ଅର୍ଜନ କରିଥିଲେ ।

ସେ ଅନ୍ଧବିଶ୍ୱାସୀ ନ ଥିଲେ କି କୁସଂସ୍କାରର ଧାର ଧାରୁ ନ ଥିଲେ । ଥରେ ଏଚ୍.ଜି.ବି. କାସିମିର୍ ନାମକ ଅନ୍ୟ ଜଣେ ପଦାର୍ଥ ବିଜ୍ଞାନୀ ବୁଲି ଯାଇଥିଲେ ବୋହର୍ଙ୍କ ଗାଁକୁ । ଗାଁ ଘରର ଦାଣ୍ଡ କବାଟ ପାଖରେ ଝୁଲୁଥିଲା ଘୋଡ଼ାର ନାଲଟିଏ । ଦାଣ୍ଡ ଦରଜା ପାଖରେ ଘୋଡ଼ାର ନାଲ ଟାଙ୍ଗିଲେ ଶୁଭ ହୁଏ ବୋଲି ଅନେକ ଲୋକ ବିଶ୍ୱାସ କରିଥାନ୍ତି । ନାଲଟି କାସିମିର୍ଙ୍କ ଆଖିରେ ପଡ଼ିବାମାତ୍ରେ ସେ ବୋହର୍ଙ୍କୁ ପଚାରିଲେ, ''ଏ'କଣ ? ଆପଣ ବି'କଣ ଏହି ବାଜେ କଥାରେ ବିଶ୍ୱାସ ରଖିଛନ୍ତି ?''

ଏହି ଆଲୋଚନାକୁ ଆଗକୁ ବଢ଼ିବାକୁ ନ ଦେଇ ବୋହର ଚଟାପଟ୍ ଉତ୍ତର ଦେଲେ, ''ନା, ନା, ମୁଁ ଏହିସବୁ ବାଜେ କଥାକୁ ବିଶ୍ୱାସ କରେ ବୋଲି କିଏ କହିଲା ?''

''କିନ୍ତୁ, ତାହାହେଲେ..., ଆପଣ କାହିଁକି...... ?'' ଥତମତ ହୋଇ ପଚାରିଲେ କାସିମିର୍ ।

ବୋହର ମୁରୁକି ହସି କହିଲେ, ''ବୁଝିଲେ କାସିମିର୍, ଆପଣ ଏଥିରେ ବିଶ୍ୱାସ ରଖନ୍ତୁ କି ନ ରଖନ୍ତୁ, ତଥାପି ଏହାର କିଛି ପ୍ରଭାବ ଅଛି ଯେ !''

ନିଲ୍ସ୍ ବୋହର ଭଲ ଭାଷଣ ଦେଇ ପାରୁ ନ ଥିଲେ । କିନ୍ତୁ, ତାଙ୍କ ସାନ ଭାଇ ହାରାଲଡ୍ ବୋହର୍ ଥିଲେ ଉତ୍ତମ ବକ୍ତା । ହାରାଲ୍ଡ୍ ଥିଲେ ଜଣେ ନାମଜାଦା ଗଣିତଜ୍ଞ ଏବଂ ଖୁବ୍ ଭଲ ଗଣିତ ଶିକ୍ଷକ । ଥରେ ଜଣେ କେହି ହାରାଲ୍ଡ୍ଙ୍କୁ ପଚାରିଥିଲେ, ''ଆପଣ ତ ଖୁବ୍ ଭଲ ଭାଷଣ ଦେଇ ପାରୁଛନ୍ତି, ଭଲ ପଢ଼େଇ ପାରୁଛନ୍ତି । ହେଲେ,

ନିଲ୍ସ ଏତେ ଅପାରଗ କାହିଁକି ?'' ହାରାଲ୍ଡ ଉତ୍ତର ଦେଇଥିଲେ, ''ମୁଁ ତ ଜଣେ ଗଣିତ ଶିକ୍ଷକ । ଆଜି ମୁଁ ଯାହା କହିଥାଏ, ପରେ ମଧ୍ୟ ସେହି ଏକାକଥାକୁ ବାରମ୍ବାର ଦୋହରାଇଥାଏ । ତେଣୁ, ମୁଁ ପାଟି ଖୋଲିଲେ ମୋ ପାଟିରେ ବାଟୁଳି ବାଜେ ନାହିଁ । ହେଲେ, ଭାଇଙ୍କ କଥା ଭିନ୍ନ । ତାଙ୍କୁ ଭବିଷ୍ୟତର କଥା ଦେଖାଯାଏ ! ଏହି କାରଣରୁ, ତାଙ୍କ ତୁଣ୍ଡରୁ ଆଜି ଯାହା ବାହାରିଥାଏ, ବହୁଦିନ ପରେ ହିଁ ହୁଏ ତାର ତର୍ଜମା । ସବୁବେଳେ ନୂଆ ନୂଆ କଥା କହୁଥିବାରୁ ଏବଂ ଭାବି ଭାବି କହୁଥିବାରୁ ଅନର୍ଗଳ ଭାବରେ ଗପି ଚାଲିବା ତାଙ୍କ ପକ୍ଷେ ଅବା ସମ୍ଭବ ହୋଇପାରିବ କିପରି ?''

୧୯୫୦ ଦଶକରେ ନିଲ୍ସ ବୋହର ଆସିଥିଲେ ଭାରତ । ମୁମ୍ବାଇଠାରେ ଅବସ୍ଥିତ ଟାଟା ମୌଳିକ ଗବେଷଣା ପ୍ରତିଷ୍ଠାନରେ ଭାଷଣ ଦେବାର ସ୍ଥିର ହୋଇଥାଏ । ବୋହର ଭାଷଣ ଦେବା ଆରମ୍ଭ କଲେ । ଭାଷଣ ଦେଉ ଦେଉ ସେ କହିଲେ ଯେ ତାଙ୍କ ମତ ସହ ତାଙ୍କର ଘନିଷ୍ଠ ବନ୍ଧୁ ଆଲ୍‌ବର୍ଟ୍ ଆଇନ୍‌ଷ୍ଟାଇନ୍ ଏକମତ ହେଉନାହାନ୍ତି । ଏହା ତାଙ୍କ ମନରେ ଖୁବ୍ ଆଘାତ ଦେଉଛି । ଏତିକି କହିବା ମାତ୍ରେ ତାଙ୍କର ଆଖି ଛଳ ଛଳ ହୋଇ ଆସିଲା ଓ ତାଙ୍କ ଆଖିରୁ ଗଳି ପଡ଼ିଲା କେତେ ଟୋପା ଲୁହ ।

ଅନ୍ୟ ଏକ ଦିନର କଥା । ପଦାର୍ଥ ବିଜ୍ଞାନର ଏକ ସମସ୍ୟାକୁ ନେଇ ଆଇନ୍‌ଷ୍ଟାଇନ୍‌ଙ୍କ ସହ ତାଙ୍କର ମତ ଅମେଳ ହୋଇଥାଏ । ନିଜର ଯୁକ୍ତି ସପକ୍ଷରେ କିଛି ଲେଖିବାପାଇଁ ବୋହର୍ ପ୍ରସ୍ତୁତ ହେଉଥାଆନ୍ତି । ଏତିକିବେଳେ ତାଙ୍କ କୋଠରୀ ଭିତରକୁ ପଶିଆସିଲେ ପାଇସ୍ ନାମକ ଜଣେ ଯୁବକ । ସେ ଯାହା ଡ଼ାକିବେ, ତାକୁ ଟିକିଏ ଲେଖି ପକେଇବା ପାଇଁ ପାଇସ୍‌କୁ ଅନୁରୋଧ ଜଣେଇଲେ ସେ । ପାଇସ୍ ବି ସଂଗେ ସଂଗେ ରାଜି ହୋଇଯାଇ କାଗଜ କଲମ ଧରି ବସିପଡ଼ିଲେ । କୋଠରୀ ଭିତରେ ଏପଟ ସେପଟ ଚାଲି ବୋହର ଆରମ୍ଭ କଲେ, ''ଆଇନ୍‌ଷ୍ଟାଇନ୍...... ଆଇନ୍‌ଷ୍ଟାଇନ୍......... ଆଇନ୍‌ଷ୍ଟାଇନ୍......... ।''

ତା ପରେ କଅଣ କହିବେ ଏଇଆ ଭାବୁଥାଆନ୍ତି ବୋହର୍ । ଝରକାବାଟେ ଚାହିଁଥାଆନ୍ତି ବାହାରକୁ । ଦରଜା ଆଡ଼କୁ ପଛକରି ଠିଆ ହୋଇଥାଆନ୍ତି ସେ । ଏତିକିବେଳେ ଖୁବ୍ ଧୀରେ ସେହି ଘର ଭିତରକୁ ପଶିଲେ ଆଇନ୍‌ଷ୍ଟାଇନ୍ । କିଛି ନ କହିବା ନିମନ୍ତେ ପାଇସ୍‌କୁ ଠାରି ଦେଇ ଆଗେଇଗଲେ ବୋହର୍‌ଙ୍କ ଟେବୁଲ୍ ଡ୍ର ପାଖକୁ । ଆଇନ୍‌ଷ୍ଟାଇନ୍ ଜାଣିଥିଲେ ଯେ ସେହି ଡ୍ର ଭିତରେ ହିଁ ବୋହର୍ ତମାଖୁ ରଖିଥାଆନ୍ତି । ତମାଖୁ ନ କିଣିବା ପାଇଁ ଆଇନ୍‌ଷ୍ଟାଇନ୍‌କୁ ତାଗିଦ୍ କରିଥାନ୍ତି ତାଙ୍କ ଡ଼ାକ୍ତର । ତେଣୁ,

ବୋହର୍ ଙ୍କ ଡ୍ର' ଭିତରୁ ତମାଖୁ ଚୋରି କରିବା ପାଇଁ ହିଁ ଆଇନ୍‌ଷ୍ଟାଇନ୍ ପଶିଥିଲେ ବୋହର୍‌ଙ୍କ ରୁମ୍ ଭିତରେ । 'ଆଇନ୍‌ଷ୍ଟାଇନ୍' ପରେ କଣ ଲେଖାହେବ ସେହି ଶବ୍ଦ ବୋହର୍‌ଙ୍କ ମୁଣ୍ଡକୁ ଢୁକୁ ନ ଥାଏ । ଶବ୍ଦ ଖୋଜିବାରେ ଧନ୍ଦି ହୋଇ ବୋହର୍ ହଠାତ୍ ବୁଲିପଡ଼ିଲେ । ଦେଖିଲା ବେଳକୁ ଆଇନ୍‌ଷ୍ଟାଇନ୍ ଠିଆ ହୋଇଛନ୍ତି ତାଙ୍କ ଟେବୁଲ୍ ପାଖରେ । ଅଧା ମୁକୁଳା ଡ୍ର'ଭିତରୁ ବାହାର କରୁଛନ୍ତି ତମାଖୁ । ପଦାର୍ଥ ବିଜ୍ଞାନର ଦୁଇ ମହାନ୍ ବ୍ୟକ୍ତି ପରସ୍ପରକୁ ମୁହୂର୍ତ୍ତେ ମାତ୍ର ଚାହିଁ ଆନନ୍ଦରେ ଏବଂ ହସରେ ଫାଟି ପଡ଼ିଲେ ।

ନିଲ୍‌ସ୍ ବୋହର୍ ଫୁଟ୍‌ବଲ୍ ଖେଳିବା ପାଇଁ ଖୁବ୍ ଭଲ ପାଉଥିଲେ । ଥରେ ଏକ ଜର୍ମାନ୍ କ୍ଲବ ବିପକ୍ଷରେ ଗୋଲ୍‌ରକ୍ଷକ ଭାବରେ ଖେଳୁଥାଆନ୍ତି ସେ । ଖେଳ ବେଶ୍ ଜମିଥାଏ । ଅଧିକାଂଶ ସମୟରେ ବଲ୍ ରହିଥାଏ ଜର୍ମାନ୍ କ୍ଲବ୍ ପଟେ । ହଠାତ୍ ବଲ୍ ଚାଲିଆସିଲା ନିଲ୍‌ସ୍ ବୋହରଙ୍କ ଗୋଲ୍‌ପୋଷ୍ଟ ଆଡ଼କୁ । ଦର୍ଶକମାନେ ବଡ଼ପାଟିରେ ଚିତ୍କାର ଆରମ୍ଭ କରିଦେଲେ । ସେମାନଙ୍କ ପାଟିଶୁଣି ନିଲ୍‌ସ୍ ବୋହର ଝପଟି ଯାଇ ଧରି ପକେଇଲେ ବଲ୍‌କୁ । ଫଳରେ ଗୋଲ୍ ହୋଇପାରିଲାନି । କଅଣ କରୁଥିଲ ବୋଲି ପଚାରିବାରୁ ବୋହର୍ ଉତ୍ତର ଦେଇଥିଲେ, "ଫୁଟବଲ୍ ଖେଳ କଥା ମୁଁ ପୂରାପୂରି ଭୁଲିଯାଇଥିଲି । ମଜି ଯାଇଥିଲି ଗୋଟିଏ ଗଣିତ ସମସ୍ୟାର ସମାଧାନ କରିବାରେ ।"

ପଦାର୍ଥ ବିଜ୍ଞାନୀ ଏଚ୍.ଜି.ବି. କାସିମିର୍ ଥିଲେ ନେଦର୍‌ଲ୍ୟାଣ୍ଡର ଅଧିବାସୀ । କିନ୍ତୁ, ନିଲସ୍ ବୋହର୍ ରହୁଥିଲେ ଡେନ୍‌ମାର୍କର କୋପେନ୍‌ହେଗେନ୍‌ରେ । ଏକ ବିଦେଶୀ ରାଷ୍ଟ୍ରରେ, ଜଣେ ବିଦେଶୀ ପ୍ରଫେସରଙ୍କ ଅଧୀନରେ କାସିମିର୍ ଗବେଷଣା କରନ୍ତୁ ବୋଲି କାସିମିର୍‌ଙ୍କ ପିତାମାତା ଆଦୌ ଚାହୁଁ ନ ଥିଲେ । ହେଲେ, କାସିମିର୍ ତାଙ୍କ ପିତାମାତାଙ୍କୁ ବୁଝାଉଥିଲେ ଯେ ବୋହର ଜଣେ ସାଧାରଣ ପଦାର୍ଥ ବିଜ୍ଞାନୀ ନୁହଁନ୍ତି । ସେ ହେଉଛନ୍ତି ଜଣେ ବିଶ୍ୱବିଖ୍ୟାତ ବିଜ୍ଞାନୀ । ଏଥିରେ କିନ୍ତୁ ସେମାନଙ୍କର ବିଶ୍ୱାସ ହେଉ ନ ଥାଏ । ତେବେ, ବୋହର୍ ଜଣେ ଜଣାଶୁଣା ବୈଜ୍ଞାନିକ କି ନା ପରୀକ୍ଷା କରବାପାଇଁ କାସିମିର୍‌ଙ୍କ ପାଖକୁ ଲେଖିଲେ ତାଙ୍କର ପ୍ରଥମ ଚିଠି । ଚିଠିଟିର ଠିକଣା ଲେଖିବା ସ୍ଥାନରେ ସେ ଲେଖିଥିଲେ - କାସିମିର, ମାର୍ଫତ୍ : ନିଲ୍‌ସ୍ ବୋହର, ଡେନ୍‌ମାର୍କ ।

ଚିଠିଟି କାସିମିର୍‌ଙ୍କ ନିକଟରେ ପହଞ୍ଚିବାରେ ବିଳମ୍ବ ହେଲାନାହିଁ । ବୋହର୍ ଯେ ଜଣେ ନାମଜାଦା ବୈଜ୍ଞାନିକ, କାସିମିରଙ୍କ ପିତାମାତାଙ୍କୁ ପ୍ରମାଣ ମିଳିଗଲା ।



# ଦେଶପ୍ରେମୀ ସତ୍ୟେନ୍ଦ୍ର ନାଥ

ଡ଼କ୍ଟର ସତ୍ୟେନ୍ଦ୍ରନାଥ ବୋଷ ଥିଲେ ଆମ ଦେଶର ଜଣେ ବିଖ୍ୟାତ ପଦାର୍ଥ ବିଜ୍ଞାନୀ । ସାରା ପୃଥିବୀରେ ମଧ୍ୟ ସେ ଥିଲେ ଅତି ଜଣାଶୁଣା । ବିଶେଷ କରି 'ବୋଷନ୍' କଣିକା ସଂକ୍ରାନ୍ତ ତାଙ୍କର ଆବିଷ୍କାର ତାଙ୍କୁ ଅମର କରି ରଖିଛି । ବୋଷ୍ ଏବଂ ଆଇନ୍‌ଷ୍ଟାଇନ୍‌ଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା ।

ଡ଼କ୍ଟର ବୋଷ୍ ଥରେ ପ୍ରସ୍ତୁତ କରିଥିଲେ ଏକ ବୈଜ୍ଞାନିକ ପ୍ରବନ୍ଧ । ନିଜର ମୌଳିକ ଆବିଷ୍କାର 'ବୋଷନ୍' ବିଷୟରେ ହିଁ ପ୍ରବନ୍ଧଟି ଲେଖା ହୋଇଥିଲା । ବୋଷ ତାକୁ ପଠେଇ ଥିଲେ ଗୋଟିଏ ଭାରତୀୟ ଗବେଷଣା ପତ୍ରିକାକୁ । କିନ୍ତୁ, ପତ୍ରିକାଟି ସେହି ପ୍ରବନ୍ଧକୁ ନାପସନ୍ଦ କରି ପ୍ରକାଶ କଲାନାହିଁ । ହେଲେ, ବୋଷ୍ ଏଥିପାଇଁ ମନ ଦୁଃଖ କଲେନାହିଁ । ଜଣେ ବନ୍ଧୁଙ୍କ ପରାମର୍ଶରେ ସେ ତାକୁ ପଠେଇଦେଲେ ଆଇନ୍‌ଷ୍ଟାଇନ୍‌ଙ୍କ ପାଖକୁ ।

ଆଇନ୍‌ଷ୍ଟାଇନ୍ ଉକ୍ତ ପ୍ରବନ୍ଧଟି ପଢ଼ି ଖୁବ୍ ଖୁସି ହୋଇଗଲେ । ପ୍ରବନ୍ଧଟି ଥିଲା ଅତି ଉଚ୍ଚକୋଟୀର । ସେଥିରେ ଦିଆଯାଇଥିବା ତଥ୍ୟ ଥିଲା ପୂରାପୂରି ନୂଆ । ଆଇନ୍‌ଷ୍ଟାଇନ୍ ନିଜେ ଇଂରାଜୀରେ ଲେଖା ସେହି ପ୍ରବନ୍ଧଟିକୁ ଜର୍ମାନ୍ ଭାଷାରେ ଅନୁବାଦ କରି ପକେଇଲେ । ତା ପରେ ତାକୁ ପଠେଇଦେଲେ ଜର୍ମାନୀର ଗୋଟିଏ ବିଜ୍ଞାନ ପତ୍ରିକାକୁ । ଉକ୍ତ ପତ୍ରିକାରେ ପ୍ରବନ୍ଧଟି ପ୍ରକାଶ ପାଇବା ପରେ ସାରା ପୃଥିବୀରେ ସତ୍ୟେନ୍ଦ୍ର ନାଥ ବୋଷଙ୍କର ଖ୍ୟାତି ବଢ଼ିଗଲା ।

ଆଧୁନିକ ପଦାର୍ଥ ବିଜ୍ଞାନକୁ ଅମର ଅବଦାନ ଦେଇଥିବା ସତ୍ତ୍ୱେ ବୋଷ୍ ପି.ଏଚ୍.ଡ଼ି. କରି ନ ଥିଲେ । ତେଣୁ, ଢ଼ାକା ବିଶ୍ୱବିଦ୍ୟାଳୟ ତାଙ୍କୁ ପ୍ରଫେସର ରୂପେ ନିଯୁକ୍ତ ଦେବାପାଇଁ ଏବଂ ଇଉରୋପ ଯାଇ ସେଠାରେ ଗବେଷଣା କରିବା ପାଇଁ ମନା କରିଦେଲା । କିନ୍ତୁ, ବୋଷ୍‌ଙ୍କ କୃତିତ୍ୱ ସଂପର୍କରେ ଆଇନ୍‌ଷ୍ଟାଇନ୍‌ଙ୍କ ସୁପାରିଶ୍ ପତ୍ର ମିଳିଗଲା ପରେ ଢ଼ାକା ବିଶ୍ୱବିଦ୍ୟାଳୟ ଆଉ ଆପତ୍ତି କଲାନାହିଁ ।

୧୯୨୫ ମସିହାର କଥା । ଡ଼କ୍ଟର ବୋଷ୍ ଯାଇଥାନ୍ତି ଜର୍ମାନୀ । ସେଠାରେ ଆଇନ୍‌ଷ୍ଟାଇନ୍‌ଙ୍କ ସହ ତାଙ୍କର ବିଭିନ୍ନ ବିଷୟରେ ଆଲୋଚନା ହୋଇଥାଏ । ଥରେ ଆଲୋଚନାରେ ଭାରତର ସ୍ୱାଧୀନତା କଥା ପଡ଼ିଲା ।

ଆଇନ୍‌ଷ୍ଟାଇନ୍ ପଚାରିଲେ, ''ଡ଼କ୍ଟର ବୋଷ୍, ମୋ ମତରେ ଚାରିଆଡ଼େ ଉପନିବେଶ ସ୍ଥାପନ କରିଥିବା ଅନ୍ୟ ପାଶ୍ଚାତ୍ୟ ଦେଶଗୁଡ଼ିକଠାରୁ ଇଂରେଜମାନେ ଯଥେଷ୍ଟ ଭଲ । ଫରାସୀ ଏବଂ ଡ଼ଚ୍‌ମାନଙ୍କ ତୁଳନାରେ ଇଂରେଜମାନେ ବହୁ ଉଚ୍ଚରେ । ମୋତେ ଖୋଲିକରି କହନ୍ତୁ ତ, ଇଂରେଜମାନେ ଆପଣଙ୍କ ଦେଶ ଛାଡ଼ି ଚାଲିଯାଆନ୍ତୁ ବୋଲି ସତରେ କଣ ଆପଣମାନେ ଚାହାନ୍ତି ?''

ଆଇନ୍‌ଷ୍ଟାଇନ୍‌ଙ୍କର ଏହି ପ୍ରଶ୍ନ ଶୁଣି କାବା ହୋଇଗଲେ ଡ଼କ୍ଟର ବୋଷ୍ । ସାମାନ୍ୟ ଡ଼େରି ନ କରି ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''ନିଶ୍ଚୟ ! ଏଥିରେ ସନ୍ଦେହ କରିବାର କଣ ଅଛି ? ଆମେ ଭାରତୀୟ ମାନେ ନିଜ ଭାଗ୍ୟକୁ ନିଜେ ଗଢ଼ିବା ପାଇଁ ପ୍ରତିଜ୍ଞାବଦ୍ଧ !''

କିନ୍ତୁ, ବୋଷ୍‌ଙ୍କ କଥାରେ ଆଇନ୍‌ଷ୍ଟାଇନ୍‌ଙ୍କର ହୃଦ୍‌ବୋଧ ହେଲାନାହିଁ । ତେଣୁ ସେ ପୁଣି ପଚାରିଲେ, ''ଡ଼କ୍ଟର ବୋଷ୍, ଧରିନିଅନ୍ତୁ ଯେ ଆପଣଙ୍କ ପାଖରେ ରହିଛି ଗୋଟାଏ ବୋତାମ । ଆପଣ ଯଦି ସେହି ବୋତାମଟିକୁ ଚିପି ଦେବେ, ତେବେ ଭାରତରେ ରହିଥିବା ସବୁ ଇଂରେଜ୍ ତୁରନ୍ତ ଭାରତ ଛାଡ଼ି ପଳେଇବେ । ଆପଣ ସେ ବୋତାମଟିକୁ ଚିପି ଦେବେ ନା ଚିପିବେ କି ଚିପିବେ ନି ସେ ବିଷୟରେ ଭାବିବା ନିମନ୍ତେ ସମୟ ନେବେ ?''

ବୋଷ୍ ଟିକିଏ ମୁରୁକି ହସା ଦେଲେ । ତା' ପରେ ଉତ୍ତର ଦେଲେ, ''ଡ଼କ୍ଟର ଆଇନ୍‌ଷ୍ଟାଇନ୍, ଈଶ୍ୱର ଯଦି ମୋତେ ଏହିଭଳି ସୁଯୋଗଟିଏ ଦିଅନ୍ତି । ତେବେ ମୁଁ ମୁହୂର୍ତ୍ତେ ଡ଼େରି ନ କରି ବୋତାମଟିକୁ ଚିପି ଦେବି ।''

ବିସ୍ମିତ ହୋଇପଡ଼ିଲେ ଆଇନ୍‌ଷ୍ଟାଇନ୍ । ଅଜାଣତରେ ତାଙ୍କ ପାଟିରୁ ବାହାରି ପଡ଼ିଲା, ''ସତରେ ?'' - ତା ପରେ ସେ ଚୁପ୍ ହୋଇଗଲେ ।

ଏଥରକ ବୋଷଙ୍କର ପାଳି । ଆଇନ୍‌ଷ୍ଟାଇନ୍ ଥିଲେ ଜଣେ ଇହୁଦୀ । ସେତେବେଳକୁ ଇହୁଦୀ ରାଷ୍ଟ୍ର ଇସ୍‌ରାଏଲ୍ ସୃଷ୍ଟି ହୋଇନଥାଏ । ବୋଷ୍ ପଚାରିଲେ, ''କହନ୍ତୁ ତ, ଇହୁଦୀ ଜାତି ଏକ ନୂତନ ଇସ୍‌ରାଏଲ୍ ଦେଶ ଗଠନ କରିବା ନିମନ୍ତେ ଚେଷ୍ଟା ଚଳେଇଛନ୍ତି କାହିଁକି ? ସ୍ୱତନ୍ତ୍ର ଇସ୍‌ରାଏଲ ଦେଶ ଗଠନ ପାଇଁ ଆପଣଙ୍କର ବି ପୂର୍ଣ୍ଣ ସମର୍ଥନ ରହିଛି ବୋଲି ମୋର ବିଶ୍ୱାସ ।''

ଆଇନ୍‌ଷ୍ଟାଇନ୍ ହସି ପକେଇ କହିଲେ, ''ନିଶ୍ଚୟ, ନିଶ୍ଚୟ ! ଆପଣ କଣ କହୁଛନ୍ତି, ତାହା ମୁଁ ଏବେ ବୁଝିପାରିଲି । ଏହା ହେଉଛି ଆବେଗର ବିଷୟ, ଦେଶପ୍ରେମର କଥା । ଏଥିରେ ବୌଦ୍ଧିକ ଆଲୋଚନା କି ଯୁକ୍ତିତର୍କର ପ୍ରଶ୍ନ ଉଠୁନାହିଁ ।''



# ବୈଜ୍ଞାନିକଙ୍କ ସତ୍ୟାଗ୍ରହ

'ଆମ ମଣିଷମାନଙ୍କ ଭଳି ଗଛଲତାଗୁଡ଼ିକ ମଧ୍ୟ ରାତିରେ ଶୋଇ ସକାଳୁ ଉଠନ୍ତି ।'

'ମଣିଷ ଭଳି ଗଛଲତାମାନେ ମଧ୍ୟ ମଦ ପ୍ରଭାବରେ ମାତାଲ ହୋଇପଡ଼ନ୍ତି ।'

'ପ୍ରାଣୀମାନଙ୍କୁ ଆଘାତ କଲେ ସେମାନଙ୍କୁ କଷ୍ଟ ହୋଇଥାଏ । ସେହିପରି ଗଛଲତାମାନଙ୍କୁ ଆଘାତ କଲେ ସେମାନେ ମଧ୍ୟ କଷ୍ଟ ଅନୁଭବ କରିଥାନ୍ତି ।'

'ଯେ କୌଣସି ପ୍ରକାରର ବିଷ ପ୍ରାଣୀ ଏବଂ ଉଦ୍ଭିଦ, ଉଭୟଙ୍କପାଇଁ ସମାନ ଭାବରେ କ୍ଷତିକାରକ ହୋଇଥାଏ ।'

ଉପରେ ଯାହା ଯାହା ସବୁ କୁହାଗଲା, ତାକୁ ସହଜରେ ବିଶ୍ୱାସ କିଏ କରୁନା । କିନ୍ତୁ, ସେଗୁଡ଼ିକୁ ବୈଜ୍ଞାନିକ ଉପାୟରେ ପ୍ରମାଣ କରିପାରିଥିଲେ ସାର୍ ଜଗଦୀଶ ଚନ୍ଦ୍ର ବୋଷ । ସେ ଥିଲେ ଆମରି ଦେଶର ବୈଜ୍ଞାନିକ । ସାର୍ ଜଗଦୀଶ ଚନ୍ଦ୍ର ବୋଷ ଥିଲେ ଏକାଧାରରେ ଜଣେ ପଦାର୍ଥ ବିଜ୍ଞାନୀ ଏବଂ ଉଦ୍ଭିଦ ଶରୀର ବିଜ୍ଞାନୀ । ମାର୍କୋନୀ ବେତାର ବାର୍ତ୍ତା ପ୍ରେରଣ କରିବାର କୌଶଳ ଉଦ୍‌ଭାବନ କରିଥିଲେ ବୋଲି ସମସ୍ତେ ଜାଣନ୍ତି । କିନ୍ତୁ, ମାର୍କୋନୀଙ୍କର ବହୁପୂର୍ବରୁ ବିନା ତାରରେ ଖବର ପଠାଇବାର ବୈଜ୍ଞାନିକ କୌଶଳ ଉଦ୍‌ଭାବନ କରିଥିଲେ ଜଗଦୀଶ ଚନ୍ଦ୍ର ।

କଲିକତାର ଗୋଟିଏ ମିସନାରୀ ସ୍କୁଲ୍‌ରେ ପଢୁଥିଲେ ସେ । ସେହି ସ୍କୁଲରେ ପଢୁଥିବା ପିଲାମାନଙ୍କ ମଧ୍ୟରୁ ବେଶି ପିଲା ଥିଲେ ଇଉରୋପୀୟ ଏବଂ ଆଙ୍ଗ୍ଲୋ-ଇଣ୍ଡିଆନ୍ । ଭାରତୀୟ ଛାତ୍ରମାନଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ଜଗଦୀଶ ଚନ୍ଦ୍ର ଥିଲେ ଖୁବ୍ ନିରୀହ ଆଉ ସରଳ । ସେ ବଢ଼ିଥିଲେ ମଫସଲ ଅଞ୍ଚଳରେ । ଏଥିପାଇଁ ଗୋରା ସାହେବଙ୍କ ପୁଅମାନେ ଜଗଦୀଶ ଚନ୍ଦ୍ରଙ୍କୁ ଚିଡ଼ାଉଥିଲେ । ଛିଗୁଲେଇ ଥଟ୍ଟା ପରିହାସ କରୁଥିଲେ । ଗୋଟିଏ ଦୁଷ୍ଟ ପିଲା ତ ତାଙ୍କୁ ବହୁ ସମୟରେ ପିଟାପିଟି କରୁଥିଲା । ତାଙ୍କୁ ଡ଼ରେଇ ରଖିଥିଲା । କିଛି ଦିନ ଧରି ଜଗଦୀଶ ଚନ୍ଦ୍ର ଏହି ଅପମାନକୁ ସହି ନେଲେ । କିନ୍ତୁ, ଦିନେ ସେ ଏହାର ମୁକାବିଲା କରିବାକୁ ତିଆର ହୋଇଗଲେ । ତାଙ୍କୁ ମାଡ଼

ଦେଉଥିବା ପିଲାଟାକୁ କାବୁ କରିନେଇ ତାକୁ କଷି ଦେଇଗଲେ ବିଧା ଚଟକଣା । ଏହା ଘଟିଗଲା ଅନ୍ୟ ଗୋରା ପିଲାମାନଙ୍କ ସାମନାରେ । ବାସ୍, ସେହିଦିନଠାରୁ ସେ ପିଲାଟି ଥଣ୍ଡା ପଡ଼ିଗଲା । ଜଗଦୀଶ ଚନ୍ଦ୍ରଙ୍କୁ ଦେଖିଲେ ମୂଷା ଭଳି ରହିଲା । ତା ଦେଖାଦେଖି ଅନ୍ୟ ପିଲାମାନେ ମଧ୍ୟ ଜଗଦୀଶ ଚନ୍ଦ୍ରଙ୍କୁ ଚିଡ଼େଇବା ପାଇଁ ସାହସ କଲେନି । ବରଂ, ତାଙ୍କୁ ସମ୍ମାନ ଦେଖେଇ ଚାଲିଲେ ।

ପରେ, ଜଗଦୀଶ ଚନ୍ଦ୍ର ବୋଷ ଇଂଲଣ୍ଡ ଚାଲିଗଲେ । ଡ଼ାକ୍ତରି ପଢ଼ିବାପାଇଁ ମେଡ଼ିକାଲ୍ କଲେଜ୍‌ରେ ନାମ ଲେଖେଇଲେ । କିନ୍ତୁ, ଡ଼ାକ୍ତରି ପଢ଼ିଲେ ତ ଶବ କଟାକଟି କରିବାକୁ ପଡ଼ିଥାଏ । ଶବରୁ ବାହାରୁଥିବା ଦୁର୍ଗନ୍ଧକୁ ସହିନେବାକୁ ପଡ଼ିଥାଏ । ଜଗଦୀଶ ଚନ୍ଦ୍ରଙ୍କୁ ଏହା ସୁହାଇଲାନି । ତାହାଛଡ଼ା, ତାଙ୍କ ଦେହ ମଧ୍ୟ ଖରାପ ହେଲା । ତେଣୁ, ଡ଼ାକ୍ତରି ପଢ଼ା ଛାଡ଼ି ସେ ପଢ଼ିଲେ ବିଜ୍ଞାନ । ପଦାର୍ଥ ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ଥିଲା ବେଶୀ । ସେଠାରେ ପଢ଼ାସାରି ସେ କଲିକତା ଫେରି ଆସିଲେ । କଲିକତାରେ ଥିବା ପ୍ରେସିଡ଼େନ୍‌ସି କଲେଜ୍‌ର ପଦାର୍ଥ ବିଜ୍ଞାନ ବିଭାଗରେ ଅଧ୍ୟାପକ ରୂପେ ତାଙ୍କୁ ନିଯୁକ୍ତି ମିଳିଲା ।

ଜଗଦୀଶ ଚନ୍ଦ୍ର ଥିଲେ ଖୁବ୍ ଭଲ ଶିକ୍ଷକ । ସେ ନିୟମିତ ଭାବରେ କଲେଜ୍ ଯାଆନ୍ତି । ନିୟମିତ ଭାବରେ କ୍ଲାସ୍ ନିଅନ୍ତି । ନିଜ କର୍ତ୍ତବ୍ୟରେ ଆଦୌ ହେଲା କରନ୍ତିନି । ମାସ ଶେଷରେ ଦରମା ପାଇବା କଥା । ତାଙ୍କୁ ଯଚାଗଲା କମ୍ ଦରମା । 'ନିୟମ ମୁତାବକ କାମ କରି କମ୍ ଦରମା ପାଇବେ କାହିଁକି ବୋଲି ଜଗଦୀଶଚନ୍ଦ୍ର ପଚାରିଲେ । ତାଙ୍କୁ ଉତ୍ତର ମିଳାଲା ଯେ ଇଂରେଜ ଅଧ୍ୟାପକ ଓ ଭାରତୀୟ ଅଧ୍ୟାପକଙ୍କ ଦରମା ସମାନ ନୁହେଁ । ଜଣେ ଇଂରେଜ ଅଧ୍ୟାପକ ଯେତିକି ଦରମା ପାଇବେ, ଜଣେ ଭାରତୀୟ ଅଧ୍ୟାପକ ପାଇବେ ସେହି ଦରମାର ତିନି ଭାଗରୁ ଭାଗେ ମାତ୍ର ! ବୋଷ ଏହାର ଦୃଢ଼ ପ୍ରତିବାଦ କଲେ ସମାନ କାମ ପାଇଁ ସମାନ ଦରମା ଦାବି କଲେ । କିନ୍ତୁ, କିଏ ଅବା ତାଙ୍କର ଆପତ୍ତି ଶୁଣିବ ? ହେଲେ, ଏହି ଅନ୍ୟାୟ ବିରୋଧରେ ଲଢ଼େଇ କରିବା ନିମନ୍ତେ ପ୍ରସ୍ତୁତ ହୋଇଗଲେ ଜଗଦୀଶ ଚନ୍ଦ୍ର ।

ତାଙ୍କର ପ୍ରତିବାଦ ଥିଲା ଅସାଧାରଣ । ଏହା ଥିଲା ଏକ ଭିନ୍ନ ପ୍ରକାରର ସତ୍ୟାଗ୍ରହ । ସେ ନିୟମିତ ଭାବରେ କଲେଜ୍ ଗଲେ । ନିୟମିତ ଭାବରେ ଛାତ୍ରଛାତ୍ରୀମାନଙ୍କୁ ପଢ଼େଇ ଚାଲିଲେ । କିନ୍ତୁ, ମାସ ଶେଷରେ ଦରମା ଗ୍ରହଣ କଲେ ନାହିଁ । ପ୍ରତିମାସରେ ଏଇଆ ଚାଲିଲା । ମାସ ଶେଷରେ ଦରମା ନେବା ପାଇଁ ସେ ମନା କରି କରି ଚାଲିଲେ । ମାସ ମାସ ହୋଇ ବିତିଗଲା ପୂରା ତିନୋଟି ବର୍ଷ ।

ଜଗଦୀଶ ଚନ୍ଦ୍ର ଥିଲେ ଜଣେ ଖୁବ୍ ଭଲ ଶିକ୍ଷକ । କାମରେ ହେଳା କରିବା ତାଙ୍କ ଚରିତ୍ରରେ ନ ଥିଲା । ଶେଷରେ ସରକାର ହାର ମାନିଲେ । ଇଂରେଜ ଅଧ୍ୟାପକ ଏବଂ ଭାରତୀୟ ଅଧ୍ୟାପକଙ୍କୁ ସମାନ ଦରମା ମିଳିଲା । ଦରମାରେ ରହିଥିବା ପାତର ଅନ୍ତରକୁ ସରକାର ଉଠେଇନେଲେ । ଜଗଦୀଶ ଚନ୍ଦ୍ରଙ୍କୁ ମଧ୍ୟ ଦିଆଗଲା ପୂରା ଦରମା । ଯେଉଁ ତିନି ବର୍ଷ ଧରି ସେ ଦରମା ନେଇ ନ ଥିଲେ, ସେହି ତିନିବର୍ଷର ପୂରା ଦରମା ମଧ୍ୟ ସେ ପାଇଲେ ।

ନିଜର ନ୍ୟାଯ୍ୟ ଅଧିକାର ହାସଲ କରିବା ନିମନ୍ତେ ଇଂରେଜମାନଙ୍କୁ ବିରୋଧ କରିବାରେ ସେ କେବେହେଲେ ପଛେଇ ଯାଉ ନ ଥିଲେ ।

ଶାନ୍ତି ନିକେତନରେ ଛୁଟି କଟେଇବା ପାଇଁ ରବୀନ୍ଦ୍ରନାଥ ଠାକୁର ଥରେ ନିମନ୍ତ୍ରଣ ଜଣେଇଥିଲେ ଜଗଦୀଶ ଚନ୍ଦ୍ର ବୋଷଙ୍କୁ । ଜଗଦୀଶ ଚନ୍ଦ୍ର ତାଙ୍କୁ ଜଣେଇ ଦେଲେ ଯେ ପ୍ରତିଦିନ ସେ ଯଦି ଗୋଟିଏ ଗୋଟିଏ ନୂଆ ଗପ ଲେଖି ଜଗଦୀଶ ଚନ୍ଦ୍ରଙ୍କୁ ଶୁଣେଇବେ, ତେବେ ସେ ତାଙ୍କ ସହ ଛୁଟି କଟେଇବା ପାଇଁ ରାଜି । କବିଗୁରୁ ରବୀନ୍ଦ୍ରନାଥ ଏହି ଦାବିକୁ ମାନିନେଲେ । ରବୀନ୍ଦ୍ରନାଥଙ୍କ ପ୍ରସିଦ୍ଧ 'କାବୁଲି ବାଲା' ଗଳ୍ପଟି ସେହି ଅବସରରେ ଲେଖାଯାଇଥିଲା ବୋଲି ଜଣା ପଡ଼ିଛି ।



# ଦୟାଳୁ ଆଲ୍‌ବର୍ଟ୍

ଆଲ୍‌ବର୍ଟ୍ ସ୍ୱେଇଜର୍‌ଙ୍କ ପିତା ଥିଲେ ଜଣେ ପାଦ୍ରି । ଘରେ ପଇସାପତ୍ରର ଅଭାବ ନ ଥିଲା । ସାଂଗରେ ପଢୁଥିବା ଅନ୍ୟ ଛାତ୍ରଛାତ୍ରୀମାନେ ସାଧାରଣ ପୋଷାକ ପିନ୍ଧୁଥିବା ବେଳେ ଆଲ୍‌ବର୍ଟ ପିନ୍ଧୁଥିଲେ ଖୁବ୍ ଦାମିକା ପୋଷାକ । ଚଳୁଥିଲେ ଖୁବ୍ ଆରାମରେ । ଧନୀଘରର ପିଲା ହୋଇଥିବାରୁ ତାଙ୍କ ଶ୍ରେଣୀର ଅନ୍ୟ ଗରିବ ପିଲାମାନେ ଆଲ୍‌ବର୍ଟଙ୍କ ସହ ଖୁସିରେ ମିଳାମିଶା କରିପାରୁନଥିଲେ । ଏହା କିନ୍ତୁ ତାଙ୍କ ମନରେ ଖୁବ୍ ଦୁଃଖ ଦେଉଥିଲା ।

ସେମାନଙ୍କ ମଧ୍ୟରେ ଜଣେ ହେବାପାଇଁ ବହୁତ ବ୍ୟାକୁଳ ହୋଇପଡ଼ିଲେ ଆଲ୍‌ବର୍ଟ୍ । ସେମାନଙ୍କ ସାଂଗରେ ବସାଉଠା କରିବା, ସେମାନଙ୍କ ସାଙ୍ଗରେ ସାଥି ହୋଇ ଖେଳାବୁଲା କରିବା ଏବଂ ସେମାନଙ୍କର ସହ ମିଳିମିଶି ଥଟ୍ଟା ମଜା କରିବା ନିମନ୍ତେ ମନ ତାଙ୍କର ହାଇଁପାଇଁ ହେଉଥିଲା । କିନ୍ତୁ, ସେ କଅଣ କଲେ ସାଙ୍ଗସାଥୀମାନେ ତାଙ୍କୁ ନିଜ ମେଳରେ ଗ୍ରହଣ କରିନେବେ ? ବହୁ ସମୟରେ ଏହି ଚିନ୍ତା ତାଙ୍କ ମନକୁ ଘାରୁଥିଲା । ହଠାତ୍ ଦିନେ ମିଳିଗଲା ଉତ୍ତର ।

ସେ ଦାମିକା ପୋଷାକ ପତ୍ର ପିନ୍ଧିବା ଛାଡ଼ିଦେଇ ପିନ୍ଧିଲେ ଶସ୍ତା, ସାଧାରଣ ପୋଷାକ । ଚମଡ଼ା ଜୋତା ବଦଳେଇ ବ୍ୟବହାର କଲେ କାଠର ଜୋତା । ମୁଣ୍ଡରେ ଲଗେଇଲେ ପୁରୁଣା ଟୋପି । ଶୀତଦିନେ ମଧ୍ୟ ଓଭରକୋର୍ଟ ପିନ୍ଧିଲେନି । ପୁଅର ଏଭଳି ଏକଜିଦିଆ ପଣ ଦେଖି ତାଙ୍କ ପିତା ଗାଳିମନ୍ଦ କରିବାରୁ ଆଲ୍‌ବର୍ଟ ବଡ଼ ନମ୍ର ଭାବରେ ଉତ୍ତରଦେଲେ, "ବାପା, ଆମ ଶ୍ରେଣୀର କୌଣସି ପିଲା ଓଭର୍‌କୋର୍ଟ ପିନ୍ଧି ସ୍କୁଲ୍‌କୁ ଆସନ୍ତିନି କି ଦାମିକା ଜାମାପଟା, ଜୋତା ଆଉ ଟୋପି ପିନ୍ଧନ୍ତିନି । ତେଣୁ, ମୁଁ ସେମାନଙ୍କ ମେଳରେ ବାରି ହୋଇପଡ଼ିବା ଚାହେଁନି । ଚାହେଁ ସେମାନଙ୍କ ମଧ୍ୟରେ ସେମାନଙ୍କ ଭଳି ହେବା ପାଇଁ ।" ପୁଅଠାରୁ ଏହି ଉତ୍ତର ଶୁଣି ପିତା ଚୁପ୍ ରହିବା ଉଚିତ୍ ମଣିଲେ ।

ବାସ୍, ଏଣିକି ଆଉ କିଛି ସମସ୍ୟା ରହିଲାନି । ସାଙ୍ଗସାଥୀମାନେ ଅତି ଖୁସିରେ ଆଲ୍‌ବର୍ଟଙ୍କ ସହ ମିଳାମିଶା କରିବାରେ ଲାଗିଲେ ।

ଆଲ୍‌ବର୍ଟଙ୍କର ଏହି ଦରଦ କେବଳ ମଣିଷମାନଙ୍କ ପାଇଁ ପ୍ରକାଶ ପାଉ ନ ଥିଲା । ପ୍ରତ୍ୟେକ ପ୍ରାଣୀର ମଙ୍ଗଳ କାମନା କରୁଥିଲେ ସେ । ମଣିଷ ସମେତ ସବୁ ଜୀବଙ୍କ ପାଇଁ ତାଙ୍କର ସମ୍ମାନ ଥିଲା ।

ଦିନକର କଥା । ସାଙ୍ଗସାଥୀମାନଙ୍କ ସହ ଆଲବର୍ଟ ଯାଉଥାନ୍ତି ଘର ପାଖ ଜଙ୍ଗଲକୁ । ତାଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କ ହାତରେ ଥାଏ ଗୋଟିଏ ଗୋଟିଏ ବାଟୁଲି ଖଡ଼ା । ଚଢ଼େଇମାନଙ୍କୁ ବାଟୁଲି ମାରିବା ହିଁ ଥାଏ ସେମାନଙ୍କର ଉଦ୍ଦେଶ୍ୟ । ସେମାନଙ୍କର ହାତରେ ବାଟୁଲିଖଡ଼ା ଦେଖି ଆଲ୍‌ବର୍ଟଙ୍କ ମନରେ କୌଣସି ଅଶୁଭଚିନ୍ତା ଆସି ନ ଥିଲା ।

ସେମାନେ ଜଙ୍ଗଲରେ ପହଞ୍ଚିଗଲେ । ଗଛ ଡ଼ାଳରେ ପକ୍ଷୀମାନେ ବସି ମନ ଆନନ୍ଦରେ ରାବ ଦେଉଥିଲେ । ସେହି ସୁନ୍ଦର ପକ୍ଷୀମାନଙ୍କୁ ଦେଖିଦେବା ମାତ୍ରେ ସେମାନଙ୍କ ପାଇଁ ଆଲବର୍ଟଙ୍କ ମନରେ ବଡ଼ ଦୟା ଆସିଲା । ଏତିକିବେଳେ ପାଖ ଚର୍ଚ୍ଚରେ ବାଜି ଉଠିଲା ପ୍ରାର୍ଥନା ଘଣ୍ଟା । ଆଲ୍‌ବର୍ଟଙ୍କୁ ଶୁଣାଗଲା, ‘‘ଘଣ୍ଟାଟି ସତେ ଯେପରି ଚେତେଇ ଦେଉଛି, ଜୀବ ହତ୍ୟା ମହାପାପ, ଜୀବ ହତ୍ୟା ମହାପାପ ।

ସାଙ୍ଗେ ସାଙ୍ଗେ ଖୁବ୍ ଜୋର୍‌ରେ ଏକ ରଡ଼ି ଦେଲେ ଆଲ୍‌ବର୍ଟ । ରଡ଼ି ଶବ୍ଦ ଶୁଣି ଭୟରେ ଚଢ଼େଇ ଗୁଡ଼ିକ ଫଡ୍‌ଫାଡ୍ ହୋଇ ଉଡ଼ି ପଳେଇଲେ । ଚଢ଼େଇମାନେ ପଳେଇଯିବାର ଦେଖି ଖୁସିରେ ହାତତାଳି ଦେବାରେ ଲାଗିଗଲେ ସେ । କିନ୍ତୁ ରାଗରେ ଫାଟି ପଡ଼ିଲେ ତାଙ୍କର ବନ୍ଧୁମାନେ । ଚଢ଼େଇମାନଙ୍କୁ ଉଡ଼େଇ ଦେଇ ସେମାନଙ୍କର ଆନନ୍ଦ ମିଳେଇ ଦେଇଥିବାରୁ ସେମାନେ କ୍ରୋଧରେ ଘେରିଗଲେ ଆଲବର୍ଟଙ୍କୁ ।

‘‘କାହିଁକି ଚଢ଼େଇଗୁଡ଼ିକୁ ଉଡ଼େଇ ଦେଲୁ’’ ବୋଲି କହି ସେମାନେ ଆଲବର୍ଟଙ୍କଠାରୁ କୈଫିୟତ ଚାହିଁଲେ । କିନ୍ତୁ, ଆଲବର୍ଟ ପାଟି ଫିଟେଇ କିଛି ନ କହିଲେ ମଧ୍ୟ ସାଥୀମାନଙ୍କୁ ମିଳିଗଲା କୈଫିୟତ । ଆଲବର୍ଟଙ୍କ ଦୁଇ ଆଖିରୁ ଝରି ଚାଲିଥିଲା ଲୁହ । ତାଙ୍କର କୋହ ବନ୍ଦ ହେବା ପାଇଁ ଆହୁରି କିଛି ସମୟ ଲାଗିଗଲା । କୋହ ବନ୍ଦ ହେଲା ପରେ ସେ ସାଥୀମାନଙ୍କୁ କହିଲେ, ‘‘କୌଣସି ପ୍ରାଣୀର କଷ୍ଟ ମୁଁ ସହିପାରେନି । ସବୁ ଜୀବଙ୍କୁ ମୁଁ ଅତି ଭଲପାଏ । ସେମାନଙ୍କୁ ସମ୍ମାନ କରେ । କୌଣସି ପ୍ରାଣୀକୁ କେହି ହତ୍ୟା କରିବା ଆଦୌ ଉଚିତ୍ ନୁହେଁ । ଆଜିଠାରୁ ମୁଁ କୌଣସି ଜୀବକୁ ହତ୍ୟା କରିବି ନାହିଁ କି ଅନ୍ୟ କାହାଦ୍ୱାରା ହତ୍ୟା କରେଇଦେବି ନାହିଁ ।’’

ଏହା ଶୁଣି ସାଥୀମାନେ ଥଟ୍ଟା କରି ହସି ପକେଇଲେ । କିନ୍ତୁ, ସେମାନଙ୍କର ରାଗ ସାଙ୍ଗେ ସାଙ୍ଗେ ଥଣ୍ଡା ପଡ଼ିଗଲା । ସେମାନେ ଆଲବର୍ଟଙ୍କୁ ଖୁବ୍ ଭଲ ଭାବରେ

ଜାଣିଥିଲେ । ସେମାନେ ଜାଣିଥିଲେ ଯେ ଆଲବର୍ଟ ଖୁବ୍ ଖୁସିବାସିଆ, ଭାରି ମଉଜିଆ । ସବୁବେଳେ ତାଙ୍କ ଓଠରେ ଲାଗି ରହିଥାଏ ହସ । ଏଇଥିପାଇଁ ତାଙ୍କ ଶିକ୍ଷକମାନେ ଆଲବର୍ଟଙ୍କ ଉପରେ ବେଳେବେଳେ ବିରକ୍ତ ହୋଇଥାନ୍ତି । ସ୍କୁଲରୁ ମିଳୁଥିବା ତାଙ୍କ ରିପୋର୍ଟ କାର୍ଡରେ ଶିକ୍ଷକଙ୍କ ମତାମତ ପାଖରେ ପ୍ରାୟତଃ ଲେଖା ଯାଇଥାଏ - ‘‘ସ୍ୱେଇଜର ବଡ଼ ହସୁକୁରା ।’’

ଆଲବର୍ଟ ସ୍ୱେଇଜର୍ ଥିଲେ ଫ୍ରାନ୍ସର ଅଧିବାସୀ । କିନ୍ତୁ, ପଶ୍ଚିମ ଆଫ୍ରିକାର ଗରିବ ଲୋକେ ରୋଗରେ ସଢୁଥିବା ଖବର ପାଇ ସେ ବିଚଳିତ ହୋଇଉଠିଲେ । ସେମାନଙ୍କର ସେବା କରିବା ପାଇଁ ଡ଼ାକ୍ତରି ପଢ଼ିଲେ ସେ । ୩୬ ବର୍ଷ ବୟସରେ ଡ଼ାକ୍ତରି ପଢ଼ା ସରିଲା । ଏହାପରେ, ସାଙ୍ଗେ ସାଙ୍ଗେ ସେ ଏବଂ ତାଙ୍କର ସ୍ତ୍ରୀ ଚାଲିଲେ ପଶ୍ଚିମ ଆଫ୍ରିକାର ଲାମ୍ବାରେନିକୁ । ସେଠାରେ ଖୋଲିଲେ ଡ଼ାକ୍ତରଖାନା । ନିଜର ସତ୍ତା ହରେଇ ସେ ହୋଇଗଲେ ଆଫ୍ରିକୀୟ । ସେମାନଙ୍କ ସେବାରେ ମନପ୍ରାଣ ଢ଼ାଳିଦେଲେ ।

ତାଙ୍କର ନିଃସ୍ୱାର୍ଥପର ସେବା ମନୋଭାବ ଯୋଗୁ ୧୯୫୨ ମସିହାରେ ତାଙ୍କୁ ‘ଶାନ୍ତି’ ପାଇଁ ନୋବେଲ୍ ପୁରସ୍କାର ମିଳିଲା । ୧୯୬୫ ମସିହାରେ ସେହି ଲାମ୍ବାରେନିରେ ହିଁ ଆଲବର୍ଟ ସ୍ୱେଇଜର ମୃତ୍ୟୁବରଣ କରିଥିଲେ । ସେହିଠାରେ ହିଁ ତାଙ୍କୁ ସମାଧି ଦିଆଯାଇଥିଲା ।



# ପୃଥିବୀର ସର୍ବୋତ୍କୃଷ୍ଟ ଆବିଷ୍କାର ତାଲିକାରେ ମାଇକେଲ୍ ଫାରାଡ଼େ

ମାଇକେଲ୍ ଫାରାଡ଼େ ଥିଲେ ଜଣେ ଇଂରେଜ ପଦାର୍ଥ ବିଜ୍ଞାନୀ । ବିଦ୍ୟୁତ୍ ଏବଂ ଚୁମ୍ବକତ୍ୱ ମଧ୍ୟରେ ଯେ ଘନିଷ୍ଠ ସଂପର୍କ ରହିଛି, ତାହା ସେ ଆବିଷ୍କାର କରିଥିଲେ । ଡ଼ାଇନାମୋ, ମୋଟର, ଟ୍ରାନ୍ସମିଟର, ରେଡ଼ିଓ, ଟେଲିଭିଜନ୍ ଆଦି ଫାରାଡ଼େଙ୍କ ଆବିଷ୍କାର ଯୋଗୁଁ ସମ୍ଭବ ହୋଇଛି ।

ଫାରାଡ଼େଙ୍କ ବାପା ଥିଲେ ଜଣେ କମାର । ଅତି ଗରିବ ଥିବାରୁ ଫାରାଡ଼େ ବିଶେଷ ପଢ଼ାପଢ଼ି କରି ପାରି ନ ଥିଲେ । ସାମାନ୍ୟ ପଢ଼ିଲେଖି ଜାଣିଥିଲେ ଯାହା । ତାଙ୍କ ଗଣିତ ଜ୍ଞାନ ତ ଥିଲା ଅତି ମାମୁଲି । ପଇସା ରୋଜଗାର କରିବା ପାଇଁ ଜଣେ ବହିବନ୍ଧାଳିଙ୍କ ପାଖରେ ଚାକିରୀ କରିବାକୁ ପଡ଼ିଥିଲା ତାଙ୍କୁ । କିନ୍ତୁ, ତାଙ୍କର ମାଲିକ ଥିଲେ ବଡ଼ ଦୟାଳୁ । ପଢ଼ାପଢ଼ି କରିବା ଏବଂ ବଡ଼ ବଡ଼ ଲୋକଙ୍କ ଭାଷଣ ଶୁଣିବା ନିମନ୍ତେ ସେ ଫାରାଡ଼େଙ୍କୁ ସବୁବେଳେ ଉତ୍ସାହିତ କରୁଥିଲେ । ଏହି ପ୍ରକାରେ ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ଜନ୍ମିଲା । ତେବେ, ଭାଷଣ ଶୁଣିଲା ବେଳେ ସେ ଭାଷଣକୁ ଟିପି ନେଉଥିଲେ । ପରେ ପରିଷ୍କାର ଭାବରେ ଲେଖି ପକାଉଥିଲେ । ତାଙ୍କର ଏହି ନୋଟ୍‌ରେ ଛବି ଆଙ୍କିବା ନିମନ୍ତେ ସେ ମାସ୍କୁଏରିଅର୍ ନାମକ ଜଣେ ଚିତ୍ର ଅଙ୍କାଳିଙ୍କ ପାଖରୁ ଶିଖିଥିଲେ ଛବି ଅଙ୍କା । ଛବି ଅଙ୍କା ଶିଖିବା ନିମନ୍ତେ ମାସକୁଏରିଅରଙ୍କୁ ଦରମା ଦେଇପାରୁନଥିଲେ ଫାରାଡ଼େ । ତେଣୁ ସେ ମାସ୍କୁଏରିଅର୍ ରହୁଥିବା ଘରେ ଝାଡୁ ମାରୁଥିଲେ ଏବଂ ତାଙ୍କର ଜୋତା ସଫା କରି ଦେଉଥିଲେ । ଏହି ସମୟରେ ସାର୍ ହଂପ୍ରେ ଡ଼ାଭି ନାମକ ଜଣେ ବିଖ୍ୟାତ ରସାୟନ ବିଜ୍ଞାନୀଙ୍କ ଭାଷଣ ଶୁଣିବାର ସୁଯୋଗ ପାଇଥିଲେ ଫାରାଡ଼େ । ପରେ ହଂପ୍ରେଙ୍କ ଗବେଷଣାଗାରରେ ଫାରାଡ଼େଙ୍କୁ ଛୋଟିଆ ଚାକିରୀଟିଏ ମିଳିଗଲା । କିନ୍ତୁ, ତାଙ୍କର ଦରମା ଥିଲା ଅତିକମ୍ । ତାହା ସତ୍ତ୍ୱେ, ବିଦ୍ୟୁତ୍ ଆଉ ଚୁମ୍ବକତ୍ୱ ଉପରେ ଗବେଷଣା କରି ସେ ଖୁବ୍ ନାମଜାଦା ହୋଇପାରିଥିଲେ ।

ସେତିକିବେଳେ ବଡ଼ ବଡ଼ କମ୍ପାନୀଗୁଡ଼ିକ ପରାମର୍ଶ ନେବା ପାଇଁ ଫାରାଡ଼େଙ୍କ ପାଖକୁ ଆସୁଥିଲେ । ସେମାନଙ୍କର ସମସ୍ୟାଗୁଡ଼ିକୁ ଫାରାଡ଼େଙ୍କ ପରାମର୍ଶ ଅନୁସାରେ

ସଜାଡ଼ି ନେଉଥିଲେ । ଏହି ପରାମର୍ଶ ବାବଦକୁ ସେମାନେ ଫାରାଡ଼େଙ୍କୁ ଦେଉଥିଲେ କିଛି କିଛି ଅର୍ଥ । ତେଣୁ, ଫାରାଡ଼େଙ୍କର ରୋଜଗାର ବଢ଼ିଗଲା । ପରାମର୍ଶ ଦେବାପାଇଁ ସେ ଯେତେ ଅର୍ଥ ଦାବି କରୁଥିଲେ, ଫାରାଡ଼େଙ୍କୁ ତାହା ମିଳି ଯାଉଥିଲା । କିନ୍ତୁ, ୧୮୩୧ ମସିହା ଜୁଲାଇ ୪ ତାରିଖରେ ସେ ଘୋଷଣା କଲେ ଯେ ଏଣିକି ସେ ପରାମର୍ଶ ଦେଇ ଟଙ୍କା କମେଇବା ଧନ୍ଦା ପୂରାପୂରି ଛାଡ଼ିଦେବେ । ନିଜ ଇଚ୍ଛାରେ, ସ୍ୱାଧୀନ ଭାବରେ ବୈଜ୍ଞାନିକ ଗବେଷଣା ଚଳେଇବେ । ସେଇଆ କଲେ ମଧ୍ୟ । ତେଣୁ, ୧୮୩୧ ମସିହା ଜୁଲାଇ ୪ ତାରିଖକୁ ଫାରାଡ଼େଙ୍କ 'ସ୍ୱାଧୀନତା ଦିବସ' ବୋଲି କୁହାଯାଇଥାଏ । ଏହା ଫଳରେ ତାଙ୍କର ଉପୁରି ରୋଜଗାର କମି କମି ପୂରା ବନ୍ଦ ହୋଇଗଲା ।

କୁହାଯାଇଥାଏ ଯେ ବ୍ୟବସାୟୀ ସଂସ୍ଥାଗୁଡ଼ିକଠାରୁ ସଂପର୍କ ତୁଟେଇ ଦେବା ଫଳରେ ଫାରାଡ଼େଙ୍କ ଆବିଷ୍କାର ଲୋକପ୍ରିୟ ହୋଇପାରିଲାନି । ଡ଼ାଇନାମୋ ଏବଂ ଇଲେକ୍‌ଟ୍ରିକ୍ ମୋଟର କାମରେ ଲାଗିପାରିଲାନି । ୧୮୩୪ ମସିହା ବେଳକୁ ସେ ନିଜକୁ ଏକ ଘରିକିଆ କରି ରଖିଲେ । ଭୋଜି ଭାତରେ ଯୋଗ ଦେବାକୁ ମନା କରିଦେଲେ । ସପ୍ତାହରେ ତିନିଦିନ କବାଟ କିଳି ଘର ଭିତରେ ହିଁ ରହୁଥିଲେ । ସାଧାରଣ ଲୋକ ଓ ଅଣବୈଜ୍ଞାନିକଙ୍କୁ ଛାଡ଼ି ବୈଜ୍ଞାନିକମାନଙ୍କ ପାଖ ମାଡ଼ିଲେନି ।

ଏହା ସତ୍ତ୍ୱେ, ବିଜ୍ଞାନକୁ ଜନସାଧାରଣଙ୍କ ମଧ୍ୟରେ ଲୋକପ୍ରିୟ କରାଇବାରେ ଖୁବ୍ ତତ୍ପର ରହିଥିଲେ ଫାରାଡ଼େ । ଲଣ୍ଡନ୍‌ର ରୟାଲ୍ ଇନ୍‌ଷ୍ଟିଚିଉଟ୍‌ରେ ପ୍ରତି ଶୁକ୍ରବାର ସଂଧ୍ୟାରେ ବିଜ୍ଞାନ ବିଷୟରେ ଅତି ସରଳ ଭାଷାରେ ଭାଷଣ ଦେଉଥିଲେ । ପିଲାମାନଙ୍କ ପାଇଁ ଆୟୋଜନ କରୁଥିଲେ ଅଲଗା ଭାଷଣ । ଭାଷଣ ଦେଲାବେଳେ ବୈଜ୍ଞାନିକ ପରୀକ୍ଷାମାନ କରି ଦେଖାଉଥିଲେ । ଯେଉଁମାନେ ଭାଷଣ ଶୁଣିବାକୁ ଆସୁଥିଲେ, ସେମାନଙ୍କ ଭିତରୁ ନିଜର ପ୍ରିୟ ଲୋକମାନଙ୍କୁ ଚିହ୍ନଟ କରି ସେମାନଙ୍କୁ ଦେଉଥିଲେ ଦାୟିତ୍ୱଟିଏ । ଦାୟିତ୍ୱଟି ହେଲା - 'ଭାଷଣ ଦେବାବେଳେ, 'ଶୀଘ୍ର ଶୀଘ୍ର କହିଲେ', 'ଅତି ଧୀରେ ଧୀରେ କହିଲେ', 'ଭାଷଣକୁ ବେଶୀ ଲମ୍ବେଇ ଚାଲିଲେ' କି 'ଭାଷଣ ବୁଝି ନ ହେଲେ', ସେମାନେ ଠାର ସାହାଯ୍ୟରେ ଫାରାଡ଼େଙ୍କୁ ଜଣେଇ ଦେଉଥିଲେ ସେମାନଙ୍କଠାରୁ ସୂଚନା ପାଇ ନିଜ ଭାଷଣର ଧାରାକୁ ସେହି ଅନୁସାରେ ସଜାଡ଼ି ନେଉଥିଲେ ସେ ।

ତେବେ, ହାତରେ ପଇସା ନ ଥିବାରୁ ଘର ଚଳେଇବାପାଇଁ ବଡ଼ ଅସୁବିଧା ହେଉଥିଲା । ରୟାଲ୍ ଇନ୍‌ଷ୍ଟିଚିଉଟ୍‌ରେ ତାଙ୍କ ଚାକିରୀରୁ ସେ ବର୍ଷକୁ ପାଉଥିଲେ ମାତ୍ର ୧୦୦ ପାଉଣ୍ଡ୍ । ଏତିକି ଟଙ୍କାରେ ଘର ଚଳିବ ଅବା କେମିତି ? ଫାରାଡ଼େଙ୍କର ଏହି ଦୁର୍ଦ୍ଦଶା କଥା ପଡ଼ିଲା ସାର୍ ରବର୍ଟ୍ ପିଲ୍‌ଙ୍କ କାନରେ । ସେତେବେଳେ ରବର୍ଟ୍ ପିଲ୍ ଥିଲେ ବ୍ରିଟେନ୍‌ର ପ୍ରଧାନ ମନ୍ତ୍ରୀ । ଫାରାଡ଼େଙ୍କ ଅଭାବ କଥା ଶୁଣି ପିଲ୍ କହିଥିଲେ, ''ଦେଶ ଯଦି ଫାରାଡ଼େଙ୍କୁ ନ୍ୟାୟ ଦେବନି ତ ନ୍ୟାୟ ଦେବ କାହାକୁ ? ସେ ହିଁ ସରକାରୀ

ପେନ୍‌ସନ୍ ପାଇବାକୁ ସଂପୂର୍ଣ୍ଣ ହକ୍‌ଦାର ।'' କିନ୍ତୁ, ସରକାରୀ ଆଦେଶ ଜାରି ହେବା ପୂର୍ବରୁ ପିଲ୍‌ଙ୍କୁ ପ୍ରଧାନମନ୍ତ୍ରୀ ପଦ ହରେଇବାକୁ ପଡ଼ିଲା । ପ୍ରଧାନମନ୍ତ୍ରୀ ହେଲେ ଲର୍ଡ୍ ମେଲ୍‌ବୋର୍ଣ୍ଣ । ଫାରାଡ଼େଙ୍କୁ ପେନ୍‌ସନ୍ ଦେବା ପାଇଁ ମେଲ୍‌ବୋର୍ଣ୍ଣ ମନା କରିଦେଲେ । ହେଲେ, ଫାରାଡ଼େଙ୍କ ବନ୍ଧୁମାନେ ମେଲ୍‌ବୋର୍ଣ୍ଣଙ୍କ ନିଷ୍ପତ୍ତିକୁ ସହଜରେ ଗ୍ରହଣ କରି ପାରିଲେନି । ଫାରାଡ଼େଙ୍କ ଦୁର୍ଦ୍ଦଶା କଥା ଜଣେଇ ସେମାନେ ସିଧା ଦରଖାସ୍ତ ଦେଲେ ରାଜା ଚତୁର୍ଥ ଉଇଲିୟମ୍‌ଙ୍କୁ । ରାଜା ଦରଖାସ୍ତଟିକୁ ପଢ଼ିଲେ । ଦରଖାସ୍ତ ପଢ଼ି ସାରିବା ବେଳକୁ ତାଙ୍କ ଆଖିରେ ଲୁହ ଜକେଇ ଆସିଥିଲା । ରାଜାଙ୍କ ଆଦେଶରେ ଫାରାଡ଼େଙ୍କୁ ବାର୍ଷିକ ୩୦୦ ପାଉଣ୍ଡର ପେନ୍‌ସନ୍ ମିଳିଲା । ମେଲ୍‌ବୋର୍ଣ୍ଣ ନିଜର ଭୁଲ୍ ବୁଝିପାରି ଲିଖିତ ଆକାରରେ ଫାରାଡ଼େଙ୍କଠାରୁ କ୍ଷମା ମାଗିଥିଲେ ।

ପରେ, ଫାରାଡ଼େଙ୍କୁ ନାଇଟ୍ ଉପାଧି ଦେବାପାଇଁ ସ୍ଥିର କରାଯାଇଥିଲା । 'ନାଇଟ୍' ଉପାଧି ଗ୍ରହଣ କରିଥିଲେ ତାଙ୍କୁ 'ସାର୍ ମାଇକେଲ୍ ଫାରାଡ଼େ' ବୋଲି ସମ୍ବୋଧନ କରାଯାଇଥାନ୍ତା । କିନ୍ତୁ, ଏହି ଉପାଧି ଗ୍ରହଣ କରିବା ପାଇଁ ସେ ମନା କରିଦେଲେ । ସେ କହିଥିଲେ, ''ମରିବା ପର୍ଯ୍ୟନ୍ତ ମୁଁ କେବଳ ମାଇକେଲ୍ ଫାରାଡ଼େ ନାଆଁରେ ହିଁ ରହିବାକୁ ଚାହେଁ ।''

ମାଇକେଲ୍ ଫାରାଡ଼େ - 'କେବଳ ମାଇକେଲ୍ ଫାରାଡ଼େ' - ୧୮୬୭ ମସିହା ଅଗଷ୍ଟ ୨୫ ତାରିଖରେ ମୃତ୍ୟୁବରଣ କରିଥିଲେ ।

ମାଇକେଲ୍ ଫାରାଡ଼େଙ୍କ କୃତିତ୍ୱ ବର୍ଣ୍ଣନା କରିବାକୁ ଯାଇ ନୋବେଲ୍ ପୁରସ୍କାର ବିଜେତା ପଦାର୍ଥ ବିଜ୍ଞାନୀ ସାର୍ ଉଇଲିଅମ୍ ବ୍ରାଗ୍ କହିଥିଲେ, ''ପୃଥିବୀବାସୀଙ୍କ ମଙ୍ଗଳ ପାଇଁ ସ୍ୱର୍ଗରୁ ଅଗ୍ନି ଆଣି ପ୍ରଦାନ କରିଥିଲେ ପ୍ରୋମେଥିଅସ୍ ! କିନ୍ତୁ, ଏହା ତ କାହାଣୀ । ହେଲେ, ଫାରାଡ଼େ ହିଁ ପୃଥିବୀବାସୀଙ୍କୁ ଅର୍ପଣ କରିଛନ୍ତି ବିଦ୍ୟୁତ୍ । କିନ୍ତୁ ଏହା କାହାଣୀ ନୁହେଁ, ପୂରାପୂରି ସତ ।''

ନିଜ ବିଷୟରେ ଫାରାଡ଼େ କହିଥିଲେ, ''ମୁଁ ଯେ ଖୁବ୍ ବୁଦ୍ଧିଆ, ଏହା ଆଦୌ ଭାବିବନି । ମୁଁ ତୁମ୍ଭମାନଙ୍କ ଭଳି ଜଣେ ସାଧାରଣ ମଣିଷ । ତେବେ, ମୁଁ ଟିକିଏ ବେଶୀ କଳ୍ପନା ବିଳାସୀ । ମୁଁ ମଧ୍ୟ 'ଆରବ୍ୟ ରଜନୀର କାହାଣୀ'କୁ ବିଶ୍ୱାସ କରେ, ବିଶ୍ୱାସ କରେ ବିଶ୍ୱଜ୍ଞାନ କୋଷରେ ଲେଖାଥିବା ବିଷୟଗୁଡ଼ିକୁ । କିନ୍ତୁ, ଚିନ୍ତା ନ କରି କୌଣସି କଥାକୁ ଅନ୍ଧଭାବରେ ବିଶ୍ୱାସ କରିଯାଏନି ।''

ବିଖ୍ୟାତ ରସାୟନବିତ୍ ସାର୍ ହଂଫ୍ରେ ଡ଼ାଭିଙ୍କ ଶେଷଦିନ ପାଖେଇ ଆସୁଥାଏ । ସେହି ସମୟରେ ତାଙ୍କର ଜଣେ ବଂଧୁ ତାଙ୍କୁ ପଚାରିଲେ, ''ଡ଼ାଭି, ତୁମର ସର୍ବୋତ୍କୃଷ୍ଟ ଆବିଷ୍କାରଟି କଅଣ ?'' ଡ଼ାଭି ଉତ୍ତର ଦେଇଥିଲେ, ''ମାଇକେଲ୍ ଫାରାଡ଼େ ହିଁ ମୋର ସର୍ବୋତ୍କୃଷ୍ଟ ଆବିଷ୍କାର ।''



# ପ୍ରକୃତି ପ୍ରେମୀ ହୋମି ଭାବା

ତୁମ୍ଭେମାନେ କେହି କେହି ହୋମି ଭାବାଙ୍କ ନାଁ ଶୁଣିଥିବ । ସେ ହିଁ ଆମ ଦେଶରେ ପରମାଣୁ ବିଜ୍ଞାନର ମୂଳଦୁଆ ପକେଇଥିଲେ । ବମ୍ବେ (ଏବକାର ମୁମ୍ବାଇ) ଠାରେ ସେ ପ୍ରତିଷ୍ଠା କରିଥିଲେ ଟାଟା ମୌଳିକ ଗବେଷଣା ପ୍ରତିଷ୍ଠାନ ବା 'ଟାଟା ଇନ୍‌ଷ୍ଟିଚିଉଟ୍ ଅଫ୍ ଫଣ୍ଡାମେଣ୍ଟାଲ୍ ରିସର୍ଚ୍ଚ' । ଭାବା ପରମାଣୁ ଗବେଷଣା କେନ୍ଦ୍ର ତାଙ୍କରି ନାଆଁରେ ନାମିତ ।

ଭାବା ଥିଲେ ଖୁବ୍ ସଂଗୀତ ପ୍ରିୟ । ବେହେଲା ବଜେଇବା ଏବଂ ଚିତ୍ର ଆଙ୍କିବା ଥିଲା ତାଙ୍କର ସଉକ । ସଂଗୀତ ଆସର ଗୁଡ଼ିକରେ ଯୋଗ ଦେବାକୁ ସେ ଅତି ଭଲ ପାଉଥିଲେ । ରାତିରେ ଖାଇବା ପୂର୍ବରୁ ଆଗେ କିଛି ସମୟ ପାଇଁ ସଂଗୀତ ଶୁଣିବାରେ କଟାଉଥିଲେ ସେ । ତା ପରେ ଭୋଜନ କରି ମଜି ରହୁଥିଲେ ଗବେଷଣାରେ । ବ୍ରିଟିଶ୍ ଆର୍ଟ ଗ୍ୟାଲେରୀରେ ଭାବାଙ୍କ ଦ୍ୱାରା ଅଙ୍କା ଯାଇଥିବା ଅନେକ ଚିତ୍ର ସାଇତା ହୋଇ ରହିଛି ।

ପ୍ରକୃତିକୁ ସେ ଭାରି ଆଦର କରୁଥିଲେ । ବିଶେଷ କରି ଗଛଲତା ଥିଲେ ତାଙ୍କର ଅତିପ୍ରିୟ । ଦିନକର କଥା । ଟ୍ରମ୍ବେଠାରେ ଅବସ୍ଥିତ ଭାବା ପରମାଣୁ ଗବେଷଣା କେନ୍ଦ୍ରର ନିଜ ଅଫିସ୍‌କୁ ଯାଉଥାନ୍ତି ସେ । ସେତେବେଳେ କେନ୍ଦ୍ର ଅଞ୍ଚଳରେ ଚାଲିଯାଏ ରାସ୍ତା ତିଆରି କାମ । ଯେଉଁପଟେ ରାସ୍ତା ଯିବା କଥା, ସେହି ବାଟରେ ପଡୁଥାଏ ପୁରୁଣା ଆମ୍ବ ଗଛଟିଏ । ନୂଆ ରାସ୍ତାଟିକୁ ସିଧା ଭାବରେ ତିଆରି କରିବା ପାଇଁ କେତେକ ଲୋକ ଆମ୍ବଗଛକୁ ହାଣିବା ଆରମ୍ଭ କରି ଦେଇଛନ୍ତି । ଅଫିସ୍‌କୁ ଗଲାବେଳେ ଏହା ଭାବାଙ୍କ ଆଖିରେ ପଡ଼ିଲା ।

ସେ ସାଂଗେ ସାଂଗେ କାର୍ ଅଟକେଇଲେ । କାର୍‌ରୁ ଓହ୍ଲେଇପଡ଼ି ଚାଲିଲେ ଗଛ କଟାଳିମାନଙ୍କ ପାଖକୁ । ସେମାନଙ୍କୁ ପଚାରି ଜାଣିଲେ ଯେ ସେହି ଗଛଟିକୁ ସେମାନେ ନିଲାମରେ କିଣି ନେଇଛନ୍ତି । ଗଛ କାଟିବା କିଛି ସମୟ ପାଇଁ ବନ୍ଦ ରଖିବା ନିମନ୍ତେ ଭାବା ସେମାନଙ୍କୁ ଅନୁରୋଧ ଜଣେଇ ପହଞ୍ଚିଲେ ଅଫିସ୍‌ରେ । ଅଫିସ୍‌ରେ ପହଞ୍ଚି ସାଂଗେ ସାଂଗେ ଡ଼କେଇ ପଠେଇଲେ ଏସ୍.ଡ଼ି. ବୈଦ୍ୟଙ୍କୁ । ବୈଦ୍ୟ ଥିଲେ

କେନ୍ଦ୍ରର ରାସ୍ତାଘାଟ ଏବଂ କୋଠାବାଡ଼ି ତିଆରି ଦାୟିତ୍ୱରେ । ଭାବାଙ୍କ ପାଖରେ ହାଜର ହୋଇଗଲେ ବୈଦ୍ୟ । ଭାବା ତାଙ୍କୁ କହିଲେ, "ଦେଖନ୍ତୁ, କେତେକ ଲୋକ ପୁରୁଣା ଆମ୍ବଗଛଟିକୁ କାଟି ଦେଉଛନ୍ତି । ଆପଣ ତୁରନ୍ତ ସେଠାକୁ ଯାଇ କୌଣସି ମତେ ଗଛଟିକୁ ରକ୍ଷା କରନ୍ତୁ । ତାହା ସମ୍ଭବ ନ ହେଲେ ଗଛଟିକୁ ମୂଳରୁ ତାଡ଼ି ଅନ୍ୟ କୌଣସି ସ୍ଥାନରେ ପୋତିବାର ବ୍ୟବସ୍ଥା କରନ୍ତୁ ।"

ବୈଦ୍ୟ ସାହେବ ଗଛକଟା ସ୍ଥାନରେ ପହଞ୍ଚିଲେ । ତା' ପରେ ଫେରି ଆସି ଭାବାଙ୍କୁ କହିଲେ, "ସାର୍, ସେ ଗଛଟିକୁ ଆମେ କିଣି ନେବାରେ କିଛି ଲାଭ ହେବ ନାହିଁ । କାରଣ, ଗଛଟି ଖୁବ୍ ପୁରୁଣା ଏବଂ କଟାଳିମାନେ ତା ଗଣ୍ଡିରୁ ଗୁଡ଼ାଏ ଅଂଶ ହାଣି ସାରିଲେଣି । ତାକୁ ତାଡ଼ି ଅନ୍ୟାସ୍ଥାନରେ ପୋତିବା ମଧ୍ୟ ସମ୍ଭବ ନୁହେଁ ।"

ଏହାଶୁଣି ଖୁବ୍ ରାଗିଗଲେ ଡ଼କ୍ଟର ଭାବା । ସେ ସାଂଗେ ସାଂଗେ ପଚାରିଲେ, "ବୈଦ୍ୟ ସାହେବ, ଆପଣ ଯଦି ଜଣେ ଡ଼ାକ୍ତର ହୋଇଥାନ୍ତେ ଏବଂ ନିଆଁଲାଗି ଦେହର ଅଧିକାଂଶ ଭାଗ ପୋଡ଼ି ଯାଇଥିବା ଗୋଟିଏ ରୋଗୀ ଆପଣଙ୍କ ପାଖରେ ଆସି ପହଞ୍ଚନ୍ତା, ତାହାହେଲେ ଚିକିତ୍ସା ନ କରି କଣ ଆପଣ ତାକୁ ଫେରେଇ ଦେଇଥାନ୍ତେ ? ଦେଖନ୍ତୁ, ଟଙ୍କା ଖର୍ଚ୍ଚକୁ ଡ଼ରିଯାଉଛନ୍ତି କି ? ଟଙ୍କା କୁଆଡ଼ୁ ଆସିବ ଭାବି ବୈଜ୍ଞାନିକ ନିଜର ସମୟ ଆଉ ବୁଦ୍ଧି ବରବାଦ୍ କରିବା ଉଚିତ୍ ନୁହେଁ ।"

ଭାବାଙ୍କ ଉଦ୍ୟମରେ ଶହେବର୍ଷର ସେହି ପୁରୁଣା ଆମ୍ବଗଛଟିର ଜୀବନ ରକ୍ଷା ହୋଇଗଲା । ଗବେଷଣା କେନ୍ଦ୍ରଟି ସ୍ଥାପିତ ହେବା ପୂର୍ବରୁ ମଧ୍ୟ ସେଠାରେ ଗଛ ଲଗେଇବାର କାମ ଆରମ୍ଭ କରିଦେଇଥିଲେ ସେ । ପୁରୁଣା ଗଛଗୁଡ଼ିକୁ ନ କାଟି ସେହି ଅନୁସାରେ ତିଆରି କରୁଥିଲେ ରାସ୍ତାର ନକ୍ସା । ଦରକାର ପଡ଼ିଲେ ବଡ଼ ବଡ଼ ଗଛକୁ ତାଡ଼ି ଏବଂ କ୍ରେନ୍ ସାହାଯ୍ୟରେ ଉଠେଇ ନେଇ ଅନ୍ୟସ୍ଥାନରେ ପୋତିବା ପାଇଁ ପରାମର୍ଶ ଦେଉଥିଲେ । ଏପରିକି, ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କୁ କହି ଅନେକ ଜାଗାରେ ଗଛକଟା ବନ୍ଦ କରି ଦେଇଥିଲେ ସେ ।

ଆଉ ଦିନକର କଥା । ପରମାଣୁ ଶକ୍ତି ବିଭାଗରୁ ଏକ ଗୋପନ ବାର୍ତ୍ତା ଆସି ପହଞ୍ଚିଲା ଭାବାଙ୍କ ବ୍ୟକ୍ତିଗତ ସହକାରୀଙ୍କ ପାଖରେ । ସହକାରୀ ଜଣକ ବାର୍ତ୍ତାଟିକୁ କାଗଜରେ ଟିପି ପକେଇ ଭାବାଙ୍କ ଅଧୀନରେ ଗବେଷଣା କରୁଥିବା ବି.ଭି. ଶ୍ରୀକାନ୍ତନଙ୍କୁ ଧରେଇ ଦେଲେ । ତାକୁ ନ ଖୋଲି ଭାବାଙ୍କ ହାତରେନେଇ ଦେଇଦେବା ପାଇଁ ଶ୍ରୀକାନ୍ତନ୍‌ଙ୍କୁ ଅନୁରୋଧ ଜଣେଇଲେ । ଭାବାଙ୍କ ସାଂଗରେ କାର୍‌ରେ ବସି ପରୀକ୍ଷା

ଘରକୁ ଯାଉଥିବା ବେଳେ ଶ୍ରୀକାନ୍ତନ୍ କାଗଜ ଖଣ୍ଡକ ବଢ଼େଇ ଦେଲେ ଭାବାଙ୍କୁ । ଭାବା ତାକୁ ପଢ଼ିନେଲେ । ତା ପରେ ତାକୁ ଶ୍ରୀକାନ୍ତନନ୍ଙ୍କୁ ଫେରେଇ ଦେଇ କହିଲେ, ‘‘ଦେଖ ଶ୍ରୀକାନ୍ତନ୍ । ଖବରଟି ଅତି ଗୋପନୀୟ । ତେଣୁ, କାଗଜ ଖଣ୍ଡିକୁ ତୁରନ୍ତ ନଷ୍ଟ କରିଦେବ !’’

ଏହା ଶୁଣି ଶ୍ରୀକାନ୍ତନ୍ ଗୁପ୍ତଖବର ଲେଖାଥିବା ସେହି କାଗଜଖଣ୍ଡିକୁ ଟିକି ଟିକି କରି ଚିରି ପକେଇଲେ ଓ ଟୁକୁରା ଖଣ୍ଡ ଗୁଡ଼ିକୁ କାର୍‌ର ଝରକାବାଟେ ବାହାରକୁ ଫିଙ୍ଗି ଦେଲେ । ଏହା ଦେଖି ରାଗରେ ଫାଟି ପଡ଼ିଲେ ଡ଼କ୍ଟର ଭାବା । ଶ୍ରୀକାନ୍ତନ୍ଙ୍କୁ ଚାହିଁ ଚଡ଼ା ଗଳାରେ କହିଲେ, ‘‘କାଗଜଟିକୁ ନଷ୍ଟ କରିଦେଇ ଖୁବ୍ ଭଲ କଲ । ହେଲେ, କାଗଜ ଟୁକୁରା ଗୁଡ଼ିକୁ ରାସ୍ତାଉପରକୁ ଫିଙ୍ଗି ଦେଇ ରାସ୍ତାକୁ ଅସନା କରିଦେଲ ଯେ !’’

ଏହା ହିଁ ଥିଲା ଡ଼କ୍ଟର ହୋମି ଭାବାଙ୍କ ପ୍ରକୃତି ପ୍ରେମର କେତୋଟି ପ୍ରମାଣ ।



# ମେଧାବୀ ବୈଜ୍ଞାନିକ ନୀଲ୍ ରତନ

ପୁରୁଣା ବୈଜ୍ଞାନିକମାନଙ୍କୁ ଛାଡ଼ିଦେଲେ ଏବକାର ବୈଜ୍ଞାନିକମାନେ ନୀଲ୍ରତନ ଧର୍ଙ୍କ ନାଁ ହୁଏତ ଶୁଣି ନ ଥିବେ । ନ ଶୁଣିବାଟା କିଛି ଅସମ୍ଭବ ନୁହେଁ । କିନ୍ତୁ, ଭାରତ ସ୍ୱାଧୀନ ହେବା ପୂର୍ବରୁ ସେ ଥିଲେ ଅତି ଜଣାଶୁଣା । ଜଣେ ଶିକ୍ଷକ ଭାବରେ ଖୁବ୍ ନାଁ କମେଇଥିଲେ ସେ । ସିଲାବସ୍ ଅନୁସାରେ ପଢ଼େଇବାକୁ ସେ ପସନ୍ଦ କରୁନଥିଲେ । ଛାତ୍ରମାନଙ୍କୁ ଯଥାର୍ଥ ଜ୍ଞାନ ବିତରଣ କରିବା ହିଁ ଥିଲା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ।

ନୀଲ୍ ରତନ ଧର୍ ଥିଲେ ଅତି ହିସାବୀ । ଖୁବ୍ କମ୍ ପଇସାରେ ଚଳି ବେଶ୍ କିଛି ଅର୍ଥ ଜମେଇ ପାରିଥିଲେ ସେ । ହେଲେ, ସେ କୃପଣ ନ ଥିଲେ କି ଟଙ୍କା ପଇସାରେ ତାଙ୍କର ଲୋଭ ନ ଥିଲା ।

ସେତେବେଳେ ବୈଜ୍ଞାନିକ ଗବେଷଣା କରିବା ନିମନ୍ତେ କେହି ପାଣ୍ଠି ଯୋଗାଇ ଦେଉ ନ ଥିଲେ । ତେଣୁ, ସଞ୍ଚିଥିବା ସମସ୍ତ ଟଙ୍କାକୁ ସେ ଗବେଷଣା ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦେଇଥିଲେ । ସେହି ଟଙ୍କାରୁ ଯେଉଁ ସୁଧ ମିଳୁଥିଲା, ସେହି ସୁଧକୁ ସାହାଯ୍ୟ ରୂପେ ଗବେଷକମାନଙ୍କୁ ଦିଆଯାଉଥିଲା । ଅର୍ଥଦାନ କରି ଆଲାହାବାଦଠାରେ ସେ ପ୍ରତିଷ୍ଠା କରିଥିଲେ 'ଶିଳା ଧର୍ ମୃତ୍ତିକା ବିଜ୍ଞାନ ପ୍ରତିଷ୍ଠାନ' । ଶୀଳା ଧର୍ ଥିଲେ ନୀଲ୍ ରତନ୍ ଧର୍ଙ୍କ ପତ୍ନୀ । ମୃତ୍ତିକା ବିଜ୍ଞାନ କ୍ଷେତ୍ରକୁ ଧର ଯଥେଷ୍ଟ ଅବଦାନ ଦେଇପାରିଥିଲେ । ତେଣୁ ଶାନ୍ତିପାଇଁ ନୋବେଲ୍ ପୁରସ୍କାର ଦେବା ନିମନ୍ତେ ନୀଲ୍ ରତନ ଧର୍ଙ୍କ ନାମ ସୁପାରିଶ କରାଯାଇଥିଲା ।

୧୯୧୭ ମସିହାରେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟରୁ ଡ଼ି.ଏସ୍.ସି ଡ଼ିଗ୍ରୀ ଲାଭ କରିଥିଲେ ସେ । ତା ପରେ, ଭାରତୀୟ ଶିକ୍ଷା ସେବା ବା ଇଣ୍ଡିଆନ୍ ଏଡୁକେଶନାଲ୍ ସର୍ଭିସ୍ (ଆଇ.ଇ.ଏସ୍)ରେ ଭର୍ତ୍ତି ହେବାପାଇଁ ନିଜର ନାଁକୁ ରେଜିଷ୍ଟ୍ରି କରେଇନେଲେ । ପରେ ପରେ ଚାଲିଗଲେ ଫ୍ରାନ୍ସର ପ୍ୟାରିସକୁ । ପ୍ୟାରିସ୍‌ରେ ଦୁଇଟି ବର୍ଷ କଟେଇସାରି ସେ ଲଣ୍ଡନ୍ ଫେରି ଆସିଲେ । ଲଣ୍ଡନ୍‌ରେ ପହଞ୍ଚି ଷ୍ଟେସନ୍‌ରୁ ସିଧା ଚାଲିଲେ ଶିକ୍ଷା ବିଭାଗର ଅଫିସ୍‌କୁ ।

ସେତେବେଳେ ଲଣ୍ଡନ୍‌ର ହ୍ୱାଇଟ୍ ହଲ୍‌ଠାରେ ଚାଲୁଥାଏ ବ୍ରିଟିଶ୍ ଶିକ୍ଷା ବିଭାଗର ଅଫିସ୍ । ଧର୍ ସେହି ଅଫିସ୍‌ରେ ପହଞ୍ଚିଲେ । ତାଙ୍କର ଆଇ.ଇ.ଏସ୍. ପାଇବା କଥା କଣ ହେଲା ବୋଲି ପଚାରିଲେ । ଭାରତ ଫେରିଯାଇ କେଉଁ କଲେଜରେ ପଢ଼େଇବେ, ସେ ବିଷୟରେ ମଧ୍ୟ ଜାଣିବାକୁ ଚାହିଁଲେ ।

ଷ୍ଟେସନ୍‌ରୁ ସିଧା ଆସିଥିବାରୁ ତାଙ୍କର କୋର୍ଟପ୍ୟାଣ୍ଟ୍ ମଇଳା ଆଉ ଲୋଚାକୋଚା ହୋଇଯାଇଥାଏ । ସେ ନିଜେ ବି ଖୁବ୍ ମଳିନ ଦେଖାଯାଉଥାନ୍ତି । ମୁଣ୍ଡର କେଶରେ ମଧ୍ୟ ପାନିଆ ବାଜି ନ ଥାଏ । କିନ୍ତୁ, ନିଜର ଚେହେରା ଆଉ ବେଶ ପୋଷାକ ପ୍ରତି ଧ୍ୟାନ ନ ଦେବା ଥିଲା ତାଙ୍କର ଅଭ୍ୟାସ ।

ତାଙ୍କୁ ଦେଖି ଜଣେ ଗେଡ଼ା ଇଂରେଜ ଅଫିସର୍ ପଚାରିଲେ, "ହଁ, ଡ଼କ୍ଟର ଧର୍ । ଆପଣଙ୍କ ନାଁ ତ ଦୁଇବର୍ଷ ତଳେ ଆଇ.ଇ.ଏସ୍. ପାଇଁ ରେଜିଷ୍ଟ୍ରିଭୁକ୍ତ ହୋଇଥିଲା । ହେଲେ, ଗତ ଦୁଇବର୍ଷ ଧରି ଆପଣ ଥିଲେ କୁଆଡ଼େ ?"

ଧର୍ ଉତ୍ତର ଦେଲେ, "ମୁଁ ଚାଲିଯାଇଥିଲି ପ୍ୟାରିସ୍ । ସେଠାକାର ସୋର୍‌ବେନିରେ ପଢ଼ାପଢ଼ି ମଧ୍ୟ ସାରି ଦେଇଛି ।"

ଅଫିସର୍ ପରିହାସ କରି ପୁଣି ପଚାରିଲେ, "ସେଠାରେ ପଢ଼ାପଢ଼ି କରୁଥିଲେ ନା ମଉଜ ମଜଲିସ୍‌ରେ ମାତି ଥିଲେ ?"

ଏଭଳି ଏକ ପ୍ରଶ୍ନ ଶୁଣି ହତବଦ୍ଧେଇ ଗଲେ ଡ଼କ୍ଟର ଧର୍ । ସେ କହିଲେ, "ମଉଜ ମଜଲିସ୍‌ରେ ମାତିବା ପାଇଁ ତ ମୁଁ ସୋର୍‌ବନି ଯାଇନଥିଲି ! ସେଠାରେ ମୁଁ ବିଜ୍ଞାନ ପଢ଼ିଛି, ଗବେଷଣା କରିଛି ଏବଂ 'ଷ୍ଟେଟ୍ ଡ଼କ୍ଟରେଟ୍ ଅଫ୍ ସାଇନ୍‌ସ୍' ଡ଼ିଗ୍ରୀ ମଧ୍ୟ ହାସଲ କରିଛି ।"

ଏବେ ଇଂରେଜ ଅଫିସର୍‌ଙ୍କ ପାଳି । ସେ ମଧ୍ୟ ହତବଦ୍ଧେଇ ଗଲେ । ଧର୍‌ଙ୍କ କଥାକୁ ବିଶ୍ୱାସ କରି ନ ପାରି ସେ କହିଲେ, "ଏହା ତ ଆଦୌ ସମ୍ଭବ ନୁହେଁ । ଆପଣ ତ ଜଣେ ଭାରତୀୟ । କୌଣସି ବିଦେଶୀ ନାଗରିକଙ୍କୁ ତ 'ଷ୍ଟେଟ୍ ଡ଼କ୍ଟରେଟ୍ ଅଫ୍ ସାଇନ୍‌ସ୍' ଡ଼ିଗ୍ରୀ ଦିଆଯାଏନାହିଁ । ଆପଣ ଅବା ସେହି ଡ଼ିଗ୍ରୀ ଲାଭ କରିବେ କିପରି ?"

ଏହା ଶୁଣି ଧର୍ ସାଂଗେ ସାଂଗେ ନିଜର ସୁଟ୍‌କେଶ୍ ଖୋଲି ପକେଇଲେ । ସୁଟ୍‌କେଶ୍ ଭିତରୁ ଡ଼କ୍ଟରେଟ୍ ଡ଼ିଗ୍ରୀର ସାର୍ଟିଫିକେଟ୍‌ଟିକୁ ବାହାର କରି ବଢ଼େଇ ଦେଲେ

ଇଂରେଜ ଭଦ୍ରବ୍ୟକ୍ତିଙ୍କୁ । ଭଦ୍ରବ୍ୟକ୍ତି ଜଣକ ସାର୍ଟିଫିକେଟ୍‌ଟି ଦେଖିଦେବା ମାତ୍ରେ ତାଙ୍କ ମୁହଁ ଲାଜରେ ଲାଲ୍ ହୋଇଗଲା ।

ତା ପରଦିନ ନୀଲ୍ ରତନ ଧରଙ୍କ ପାଖରେ ପହଞ୍ଚିଗଲା ଆଇ.ଇ.ଏସ୍ ପାଇଥିବାର ଚିଠି । ରସାୟନ ବିଜ୍ଞାନ ବିଭାଗର ପ୍ରଫେସର୍ ରୂପେ ତାଙ୍କୁ ନିଯୁକ୍ତି ମିଳିଥିଲା । ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦବୀ ଖାଲିଥିଲା । କିନ୍ତୁ, ଡ଼କ୍ଟର ଧର୍ ଆଲାହାବାଦ୍ ବିଶ୍ୱବିଦ୍ୟାଳୟରେ ରସାୟନ ବିଜ୍ଞାନ ପ୍ରଫେସର ହେବା ନିମନ୍ତେ ନିଜର ଇଚ୍ଛା ଜଣେଇଥିଲେ । ସେତେବେଳେ ସେହି ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗରେ ପ୍ରଫେସର୍ ଥାଆନ୍ତି ଜଣେ ଇଂରେଜ ଲୋକ । ଉକ୍ତ ଇଂରେଜ ଅଧ୍ୟାପକଙ୍କୁ ଅନ୍ୟ ବିଶ୍ୱବିଦ୍ୟାଳୟକୁ ବଦଳି କରିଦେଇ ତାଙ୍କ ସ୍ଥାନରେ ନିଯୁକ୍ତ ଦିଆଗଲା ଡ଼କ୍ଟର ଧରଙ୍କୁ ।

ସେତେବେଳକୁ ଡ଼କ୍ଟର ନୀଲ୍ ରତନ ଧରଙ୍କ ବୟସ ଜମା ୨୭ ବର୍ଷ !

